# ସୁମୃଘରଂ

ଶ୍ରୀ ଦ୍ୱାରକାନାଥ ଦାଶ

କୁହେଳିକା ଗ୍ରନ୍ଥମାଳା (ପ୍ରଥମ ଅବଦାନ)

# ଗୁପ୍ତ ଘର

(ଡିଟେକ୍ଟିଭ୍ ଉପନ୍ୟାସ)

(୨ୟ ସଂସ୍କରଣ)



ଲେଖକ—ଶ୍ରୀ ଦ୍ୱାରକାନାଥ ଦାଶ



ପ୍ରକାଶକ—ଶ୍ରୀ ଜୟକୃଷ୍ଣ ମିଶ୍ର
ଅଧ୍ୟାପକ ରେ. କଲେଜ
କଟକ

ପ୍ରୋପ୍ରାଇଟର ଇନ୍ଦ୍ରମଣି ଦାସ



ମୂଲ୍ୟ ଏକଟଙ୍କା ଦୁଇଅଣା

ବୋଉ,

ମୋର ଲେଖା ପଢିବାକୁ ତୋର ବଡ଼ ଆଗ୍ରହ । ତେଣୁ ତୋରି କର କମଳରେ ଏ କ୍ଷୁଦ୍ର ବହି ଖଣ୍ଡିକ ଅର୍ପଣ କଲି ।

ତୋର

'ପୁଅ'

ଜୀବନ ଗୋଟିଏ କଲେଜ ପିଲା, କଲେଜରେ ପଢୁଥିବା ବେଳେ
ପିତା ମାତାଙ୍କ ମୃତ୍ୟୁ ଖବର ଏବଂ ସ୍ନେହର ଭଉଣୀର
ଅନ୍ତର୍ଦ୍ଧାନ କଥା ଶୁଣି ପ୍ରତିଜ୍ଞା କଲା ଭଉଣୀଟିକୁ
ଉଦ୍ଧାର କରିବ ବୋଲି । ପ୍ରକୃତ ଦସ୍ୟୁ
କିଏ ? ଦସ୍ୟୁର ଗୁପ୍ତଘର ଧରା ପଡ଼ିଲା
କି ନାହିଁ ? ଜୀବନ ଭଉଣୀଟିକୁ
ଉଦ୍ଧାର କରି ପାରିଲା କି
ନାହିଁ ? ପୁସ୍ତକଟି ପଢିଲେ
ବପୁରେ ଶିହରଣ
ଛୁଟିବେ ।

ଲେଖକ

# ଅଭିମତ

ଶ୍ରୀମାନ୍ ଦ୍ୱାରକାନାଥଙ୍କ 'ଗୃହପ୍ରବେଶ'ର ପାଣ୍ଡୁଲିପିଟି ପଢ଼ି ବଡ଼ ଆନନ୍ଦିତ ହେଲି । ବାଣୀମନ୍ଦିରରେ ପ୍ରାରମ୍ଭିକ ପୂଜା କରିବାକୁ ଯାଇଛି ସେ ଏବଂ ଧୂପ, ଦୀପ, ଅର୍ଘ୍ୟ ନୈବେଦ୍ୟ ସମର୍ପଣରେ ତାର ନିହିତ ପ୍ରାଥମିକ ଅନୁଭୂତି । କିନ୍ତୁ ସୁଖର କଥା, ତାର ସଂସ୍କାର ଧରେଇ ଦେଇଛି, ତାକୁ ବାସ୍ତବ ପୂଜାର ଯଥୋଚିତ ଧାରା ଏବଂ ଯେଉଁ ବାଟରେ ସେ ଆଗେଇବାକୁ ଚାହିଁଛି ତାହା ଯେ କେବଳ ତାକୁ ଯଥାର୍ଥ ଲକ୍ଷ୍ୟରେ ପହଞ୍ଚେଇ ଦେବ ସେତିକି ନୁହେଁ, ସେ ଏକ ଅଭିନବ ପଥପ୍ରଦର୍ଶକ ଭାବରେ ଅନେକ କେତେ ପୂଜକଙ୍କୁ ବାଣୀମନ୍ଦିରକୁ ପଡ଼ିଥିବା ସେଇ ଉଜ୍ଜ୍ୱଳ ବାଟରେ ବାଟେଇ ଦେବ ସମ୍ପୂର୍ଣ୍ଣ ଏକ ନୂତନ ପ୍ରାଣ ଓ ପ୍ରେରଣାରେ । ମତେ ଠିକ ଠିକ ଦିଶୁଛି, ଜନନୀ ଭାରତୀ ହୃଦୟର ଅପୂର୍ବ ଆବେଗରେ ହାତ ବଢ଼େଇ ଦେଉଛନ୍ତି ତା ହୃଦୟର ସେଇ ମହନୀୟ ପୂଜା ସମ୍ଭାର ଗ୍ରହଣ କରିବା ଲାଗି—ତାର ଭକ୍ତ ପ୍ରାଣର ଭକ୍ତିର ଆନନ୍ଦରେ ମୁଗ୍ଧ ହୋଇ ଅଭୟ ପ୍ରଦାନ କରିବାଲାଗି ।

ତେବେ ଆମେ ସବୁ ଦେଖିବାକୁ ସେଇ ପୂଜା ସମ୍ଭାରରେ ଅଛି ସବୁ କଣ ?—ବଡ଼ ଗହନ କଥା ସେ,—ସାମଗ୍ରୀ ଗୁଡ଼ିକ ଖୋଲିବାକୁ ଆସି ନାହିଁ, ଗୃହପ୍ରବେଶର କେଉଁ ଅଦ୍ଭୁତ କୋଠରୀରୁ ଜଣାଯାଇଛି ସେଗୁଡ଼ିକ ବଡ଼ ଯତ୍ନରେ । ଆଖି କି ସମସ୍ତଙ୍କର ପଡ଼େନା ପଡ଼େନ ପଡ଼ିବ, ମାତ୍ର ପୂଜକ ଉତ୍ସବ ସଜେଇ ଦେଇଛି

ଅଳି ଉପରେ ଯୋଷାଏ ବଡ଼ ପାଙ୍କୁଡ଼ି ବଡ଼ ଗୁଳ'କରେ । ତା ପ୍ରାଣର ଏକାନ୍ତ ପୂଜା ଅବକାଶରେ ବଣାଟ ପାଙ୍କରେ ଧୀର ଭାବରେ ଝିଙ୍କିଏ ଦେଖ, ଅନ୍ତରର ଉଜ୍ଜ୍ୱଳ ଶିଖାରେ ଦେଖିବାକୁ ପାଇବ 'ଜୀବନ' ଉଦ୍ୟାନର କାନ୍ତ କୋମଳ କୁସୁମରାଜି ଯାହାର ମଧୁମୟ ସୌରଭ ତୁମକୁ ବିଭୋଳ କରିଦେବ ଅପୂର୍ବ ଭାବରେ । ପୁଣି ଦେଖିବ ସେହି ପୁଷ୍ପଗୁଚ୍ଛର ଯଥାର୍ଥ ବାସଭୋଗୀ ଓ ପ୍ରାକୃତ ବାଣୀ ଦେବୀଙ୍କର ଶକ୍ତି ମୂର୍ତ୍ତିମନ୍ତ ହୋଇ ଉଠି ପଡ଼ୁଛି ଏବଂ ନିତ୍ୟ 'ନବ' ଆନନ୍ଦର ଅଭିନବ ଆବେଗ ନେଇ ପୁଷ୍ପ ସୌରଭ ଅନ୍ତରେ ଭକ୍ତ ରହୁଛି ବାଣୀ ଦେବୀଙ୍କୁ ମୁଗ୍ଧ କରି । ନୈବେଦ୍ୟ ସ୍ତୁତିଏ ସ୍ୱର୍ଗୀୟ ଅସରେ ଭରପୂର ହୋଇ ସତେ ଯେପରି ବାଣୀ ଦେବୀଙ୍କ ଶତବୃତ୍ତି କି ଅଣା ମନ୍ଦାକିନୀରେ ଭସାଇ ଦେଉଛି । କେତିକି ନୁହେଁ, ସଂସାରର ନୀରସ କଙ୍କାଳ ଗୁଡ଼ାକ ସେଇ ସ୍ୱର୍ଗୀୟ ଅଭାବରେ ଉଜ୍ଜ୍ୱଳ ହୋଇ ଉଠୁଛି ଏବଂ ଉଦ୍ୟାନର ବନାନ୍ତ ଶୀର୍ଣ୍ଣ ଗୁଡ଼ାକ ନବଜୀବନ ପୁଷ୍ପକୁ ଭୂଷିତ କରିବା ଲାଗି ଯୋଡ଼ାଇ ହସ୍ତ ଯୋଡ଼େ ଗୋଟେ । କିନ୍ତୁ କୁହେଳିକାମୟୀ ବର୍ଷଣିକା, ଦୁରନ୍ତ ବାତାବରଣ, ବସନ୍ତ ଶୀତସବୁ ପ୍ରହେଳିକା ପରି ସେଇ ଅଭି-ନବ ଜୀବନ ସୌରଭ ଭିତରେ କୁଆଡ଼େ ମଳେଇ ଯାଉଛନ୍ତି ଛଟିକ ଭାବରେ । ଏ ହେଲ ପୂଜୋପକରଣ ଏବଂ ଏହା ଭିତରେ ଭକ୍ତ ରହିଛି ମୂକରେ ଆବେଗମୟ ମ୍ରିୟମାଣ । କିନ୍ତୁ ତାଙ୍କୁ କି ସଭାର ପୂଜୋପକରଣ ... ପ୍ରସନ୍ନ ରଖିବ ବା କେତେଦିନ ? — ବିଶେଷତଃ ବିଶ୍ୱପ୍ରାଣର ଅଭାବ ଲାଗି ଶରଦନ ଭକ୍ତ ସେଇ ବାଣୀ ମନ୍ଦିରରେ ? ଭଳି ଭଳି ନୈବେଦ୍ୟ ଅସୁ, ଫୁଲ ଅସୁ, ଧୂପ-ଦୀପ ଅସୁ, ବାଣୀଦେବୀର ପୂଜୋପକରଣ ଓ ପ୍ରସାଦରେ ଭରେ

—୧—

କଲେଜ ଛୁଟି । ଅନ୍ଧାର ରାତ । ଜୀବନ ବସିଛି ତାର ରୁମଟିରେ, ଏକୁଟିଆ, ମନେ ମନେ ଭାବୁଛି, "କାହିଁକି ଆଜି ତାକୁ ଭଲ ଲାଗୁନାହିଁ ? ପାଠ ପଢ଼ିବାକୁ ଇଚ୍ଛା ହେଉନାହିଁ କାହିଁକି ? କେବଳ ମନେ ପଡ଼ୁଅଛି ଘରକଥା, ଗୋପଣ୍ଡା କଥା, ବାପା, ମା ଏବଂ ସ୍ନେହର ଏକମାତ୍ର ଭଉଣୀ ରେଖାର କଥା । କଣ କରୁଥିବ ସେ ! ଭାଇକୁ ଥରେ ନ ଦେଖିଲେ ତାର ମନ ଅସ୍ଥିର ହୋଇ ଉଠେ । ଏକା ଥାଳିରେ ଏକସଙ୍ଗରେ ନ ଖାଇଲେ ସେ ଖାଏ ନାହିଁ । ତେବେ ସେ ଆଜିଯାଏ କପରି ବାଟ ଚାହିଁଥିବ ?, ବାପ ବୋଉ କଣ କରୁଥିବେ ? ଶେଷକୁ ମନେ ପଡ଼ିଲା, ତାର ଅତି ଆଦରର ବନ୍ଧୁ ନବ ବିଷୟରେ । ସେ ଚମକି ଉଠିଲା । କଣ କହିବ, ନବ କାହିଁକି ବହୁତ ଦିନ ହେଲା ଏଠାକୁ ଆସୁନାହିଁ ? ତାର ଦେହ କଣ ଖରାପ ହୋଇଛି ନା କଣ ? କି ସେ ମୋ ଉପରେ ରାଗ କରିଛି । ଜୀବନ ଭାବୁଛି ଆକାଶ ପାତାଳ, ଏସବୁ କଣ ? ଆଜି ତାର ଏତେ ଦୁର୍ବଳତା କାହିଁକି ? ଅଜି ଘର ବିଷୟ କାହିଁକି ଏତେ ମନେ ପଡ଼ୁଛି ! ଘରର କେହି ଖରାପ ହୋଇ ନାହିଁ ତ ! ତାର ବନ୍ଧୁ ନବକୁମାର ଏବଂ ତାର ଅତି ଆଦରର ଭଉଣୀ ରେଖାର

କିଛି ଅନିଷ୍ଟ ହୋଇ ନାହିଁ ତ ।" ବାହାରିବ ପଦାରୁ, ତାହାର ମନେ ପଡ଼ିଗଲା ଗାଁ ଜମିଦାର ରଘୁ ଚଉଧୁରୀଙ୍କ କଥା । ସେ ଜୀବନକୁ ଲଗିଲା, ମୋର ବାପା ମା ତାଙ୍କୁ ପିଟାଇଲେ । ସେ ବାପ ମାଙ୍କର କିଛି ଅନିଷ୍ଟ କଲା ନାହିଁ ତ ? ତାର ସ୍ନେହର ଭଉଣୀ ଉପରେ ସେ ବେଳେବେଳେ ନଜର ରଖିଥିଲା, ତାର କିଛି ଅନିଷ୍ଟ କରି ନାହିଁ ତ ? ତା ମନ ଚଞ୍ଚଳ ହୋଇ ଉଠିଲା । ତାକୁ ଜଣାଗଲା ଯେତେ ଯେପରି ଜମିଦାର ରଘୁ ଚଉଧୁରୀ ତାର ବାପ, ମାଙ୍କୁ ମାରି ସ୍ନେହର ଭଉଣୀ ରେଖାକୁ ଅପହରଣ କରିଛି । ସେ ସହି ପାରିଲା ନାହିଁ, ହଠାତ୍ କେତେଥର ଛୁଟି ଯାଇ ଡାକିଲା "ନରହରି, ନରହରି ।"

ତାର ବହୁତ ଦିନର ପୁରୁଣା ଚାକର ତଳେ ଶୋଇ ରହୁଥିଲା । ବାବୁଙ୍କ ଡାକଶୁଣି ଉଠିଆସି କହିଲା, "କାହିଁକି ଡାକୁ ଥିଲେ ବାବୁ ?"

ଜୀବନ ଗୁହାରି କହିଲା, "କିଏ ନରହରି" ।

ନରହରି ବାବୁଙ୍କର ଏପରି ଅବସ୍ଥା ଦେଖି ପଚାରିଲା, "କଣ କିଛି ଦେହ ଖରାପ ହୋଇଛି କି ? ଏପରି ବ୍ୟସ୍ତ ହେଉଛନ୍ତି କାହିଁକି ?"

"ନା, ମୋର କିଛି ହୋଇନାହିଁ, ରେଖା ଶୋଇ ପଡ଼ିଗଲାଣି ?"

ହଁ, ବାବୁ ଆଜ ଅଲ୍ପ ଅଛି ।

ଏହି ସମୟରେ ତଳେ କିଏ ଡାକିଲା, "ବେହେରା, ବେହେରା ଜୀବନ ବାବୁ ଘରେ ଅଛନ୍ତି ?"

ଜୀବନ କହିଲା, "ଦେଖିଲୁ ନରହରି ତଳେ କିଏ ଡାକୁଛି ?"

ନରହରି ତଳକୁ ଗଲା କବାଟ ଖୋଲିବାକୁ । ଜୀବନ ଅନ୍ଧକାରରେ ଚଉକି ଉପରେ ବସି ପଡ଼ିଲା । ମନେ ମନେ କହୁଥିଲା,

“ଏ ତ ନବ ପାଟିପର ସ୍ୱର ଭଳି, ନବ କଣ ଆସିଛନ୍ତି । ସେ ବା ଏତେ ରାତିରେ ଅନ୍ଧାରରେ ଆସିବେ ? କଣ ଘର ଖବର ନେଇ ଆସିଛନ୍ତି ? କଣ ଆଣିଛନ୍ତି ଭଲ ନା ମନ୍ଦ ।”

ଏ ସବୁ ଜାଣିବାକୁ ଉତ୍କଣ୍ଠା ସହକାରେ ବସି ରହିଲେ । ଏହି ସମୟରେ ନରହର ଏବଂ ନବ ଆସି ପହଞ୍ଚିଲେ ଜୀବନ ପାଖରେ । ଜୀବନ ଯାହା ଭାବିଥିଲା, ସତରେ ସେ ତାହା ଘଟିବ, ତାହା ନିଜ ଆଖିରେ ଦେଖି ସୁଦ୍ଧା ବିଶ୍ୱାସ କରି ପାରିଲା ନାହିଁ । ଭଲକରି ଦୁଇ ହାତରେ ଆଖି ମଳି ଚାହିଁ ଦେଖିଲା ତାର ପ୍ରାଣର ବନ୍ଧୁ ନବ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଛି । ବହୁ ଦିନପରେ ବନ୍ଧୁ ନବକୁ ଦେଖି ତାଙ୍କୁ ଉଠିଯାଇ ଆନନ୍ଦରେ କୁଣ୍ଢାଇ ପକାଇଲା । ନବ ମଧ୍ୟ । ତାପରେ ଜୀବନ କହିଲା, ‘ନରହର ଗୁହିଁର କପଣ ଯାଅ, ଆମ ଦୁହିଁଙ୍କ ପାଇଁ ଖାଇବାକୁ ଏଠାକୁ ନେଇଆସ ।”

ନରହର କିଛି ନ କହି ଖାଦ୍ୟ ଆଣିବାକୁ ଚାଲିଗଲା । ତାପରେ ଜୀବନ ନବକୁ ଗୋଟିଏ ଚଉକିରେ ବସାଇ ଦେଇ ନିଜେ ଗୋଟିଏ ଚଉକିରେ ବସି ପଡ଼ିଲା । ତା ପରେ କହିଲା, “ନବ ମୋତେ ସବୁ ଗୋଟି ଗୋଟି କରି କହୁଥା, ତୁ ଏତେଦିନ କେଉଁଠି ଆସୁ ନ ଥିଲୁ କହିବୁ ? ବାପା ବୋଉ ମୋର ଭଲ ଅଛନ୍ତି ତ ? ତୁ ଆସିଲା ବେଳକୁ ସେମାନେ କଅଣ କରୁଥିଲେ ? ସେଠା କାହାରି ଅଛି ? ସେ କଅଣ କରୁଥିଲା ? ଜମିଦାର ସେମାନଙ୍କ ଉପରେ ଅତ୍ୟାଚାର କରୁ ନାହିଁ ତ ? ଗାଁ ଖବର କଅଣ ? ଆଉ ତୁ କିପରି ଚଳୁଛୁ ?”

ଏହା କହିବାପରେ ଜୀବନ ଘଣ୍ଟାର ପରି, ମନୁ ଦୁର୍ଦ୍ଦ, ନାହାକ ତାର ପରିବାରର କଥା । ଶେଷକୁ ଜୀବନ ଚୁପ୍ ହୋଇ ବସି

ରହିଲା । ଦେଖିଲା ନବ ଆଖିରେ ଆଖିଏ ଲୁହ । ସେ ଅପ୍ରସ୍ତୁତ ହୋଇ ପଚାରିଲା, "ଏ କଅଣ ନବ, ତୋ ଆଖିରେ ଲୁହ କାହିଁକି ? କଥା କଅଣ, କିଛି ଅସୁବିଧା ହେଲା ? ମୁଁ ଏତେ ପ୍ରଶ୍ନ ପଚାରିଲି ବୋଲି ତୋ ମନରେ ଦୁଃଖ ହେଲା ?" ଏଥର ନବ ନିଜ ବୈଠକରୁ ଉଠିଯାଇ ରୁମାଲରେ ମୁହଁ ପୋଛି ଦେଇ କହିଲା, "ଓ ବୁଝିଲି ଶୋକ ହେଲାଣି ନା ? ସେଥିପାଇଁ କିଛି କହି ପାରୁନାହଁ । ହଁ ବିଚାର କଥା, ବହୁତ ବାଟରୁ ଆସିଲଣି । ମତେ କ୍ଷମା ଦେ ।" ତାପରେ ଜୀବନ ଉପରୁ ତାକୁ ଶୁଣିଲା, "ଆରେ ନରହରି" ।

'ନରହରି, ହଁ ବାବୁ କହ ଏଥରେ କାମରେ ମନ ଦେଲା ।'

ନବ ଡାକିଲା, "ଜୀବନ" !

ଜୀବନ ଚୌକିରେ ବସି ବସି କହିଲା, 'କଣ' ?

ନବ କହିଲା, "ତୋ ପ୍ରଶ୍ନର ଉତ୍ତର ଶୁଣିବୁ ?"

ଜୀବନ ଚଉକିଟାକୁ ନବ ପାଖକୁ ଟାଣି ଆଣି କହିଲା, "ହଁରେ ମୁଁ ତ ସବୁକଥା ଶୁଣିବି ନାହିଁ କାହିଁକି ?" ନବ ଆରମ୍ଭ କଲା :—

ଜମିଦାର କଥା ଶେଷ ତା ତ ତୁ ଜାଣୁ । ସେ ତୋ ବାପ ମାଙ୍କୁ [illegible] ଦୃଷ୍ଟିରେ ଦେଖେ, କାରଣ ସେ ତାଙ୍କ କଥା ଅନୁସାରେ ଚଳନ୍ତି ନାହିଁ । ଦିନେ ସେ ଟଙ୍କା ମାଗିଲେ, ତାହା ମନା କଲେ । ସେହି ଦିନ ରାତିରେ ତୋ ପିତାଙ୍କର ମୃତ୍ୟୁ ହେଲା । ପିତାଙ୍କ ମୃତ୍ୟୁ ପରେ ମା ତୋର ମରିଗଲେ ଏବଂ ମୋ ହାତରେ ସମର୍ପିଦେଲେ ଆଦରର କନ୍ୟା ରେଖାକୁ । ଦୁଇଟି ଯାକ ଛୋଟଦିନ ସୁଖରେ ଥିଲୁ । ଶେଷକୁ ସେ ମଧ୍ୟ ପିଶାଚ ଜମିଦାରର ହସ୍ତଗତ ହେଲା । ମୁଁ ତାକୁ ବହୁତ ଖୋଜିଲି, ଘର, ଦୁଆର, ବାଡି ବଗିଚା, ଜୋରସୋର କଲି । କିନ୍ତୁ କୌଣସିଠାରେ ତାକୁ ପାଇଲି ନାହିଁ । ଦାରୋଗା, କନେଷ୍ଟବଲ୍ ପ୍ରଭୃତି ଆସିଲେ, ସେମାନେ ମଧ୍ୟ ବହୁତ

ଖୋଜିଲେ, କିନ୍ତୁ ରେଖାର ପତ୍ତା ମିଳିଲା ନାହିଁ । ବହୁତ ଲୋକଙ୍କୁ ବହୁତ ପ୍ରଶ୍ନ ପଚରା ଗଲା, କିନ୍ତୁ କିଛି ସଠିକ ଖବର ମିଳିଲା ନାହିଁ । ନିରାଶ ହୃଦୟରେ ମୁଁ ଫେରି ଆସିଲି । ମୋର ଭଗ୍ନ କୁଡ଼ିଆକୁ । ମୋ ଆଖି ଆଗରେ ରେଖାର ଛବିଟା ନାଚି ଉଠିଲା । ମୁଁ ପ୍ରତିଜ୍ଞା କଲି, ଯେ କୌଣସି ପ୍ରକାରେ ହେଉ ରେଖାକୁ ଉଦ୍ଧାର କରିବି । ଏଣୁ ତୋ ପାଖକୁ ଧାଇଁ ଆସିଛି ।" ସବୁ କହି ସାରିଲା ପରେ ସେ ବଡ଼ ଅସ୍ଥିର ହୋଇ ପଡ଼ିଲା ଏବଂ ଦେଖିଲା ଜୀବନ ବେହୋସ ହୋଇ ପଡ଼ିଛି ଓ ନରହରି ଖାଇବାର ଜିନିଷ ଧରି ଠିଆ ହୋଇଛି । ନବ ଉଠିଯାଇ ଜୀବନକୁ ଟେକିନେଇ ପଲଙ୍କ ଉପରେ ଶୁଆଇ ଦେଇ ନରହରିକୁ ପାଣି ଆଣିବାକୁ କହିଲା । ନରହରି ପାଣି ଆଣି ଦେଲା ।

ଘଣ୍ଟାଏ ପରେ ଜୀବନ ଚେତା ପାଇ ଉଠି ବସିଲା । ତାକୁ ବଡ଼ ଖରାପ ଲାଗୁଥାଏ । କିନ୍ତୁ ନବ ବହୁତ ବୁଝାଇବା ପରେ ଦୁହେଁ ଖାଇ ବସିଲେ । ଖିଆ ସରିଲା । ନରହରି ବାସନ ନେଇ ତଳକୁ ଖାଇବାକୁ ଚାଲିଗଲା ।

ଦୁଇବନ୍ଧୁ ଖଟ ଉପରେ ବସି କ୍ଷଣେ ବରବେ ଭାବିବାକୁ ଲାଗିଲେ । କିଏ କେତେ ପ୍ରକାର କହିଲା, କିନ୍ତୁ ସେଥିରେ କାହାର ମନ ମାନିଲା ନାହିଁ । ଶେଷକୁ ଜୀବନ କହିଲା, "ନବ କାଲି ସକାଳୁ ମୁଁ ଗାଁକୁ ଯାଉଛି । ସେଠାରୁ ସବୁ ବୁଝି ଗୋଟିଏ ଦିନ ମଧ୍ୟରେ ଫେରି ଆସିବି । ତୁ ଏଇଠି ଥା । ମୁଁ ନ ଆସିବା ଯାଏ କୁଆଡ଼େ ଯିବୁ ନାହିଁ ।"

ନବ କହିଲା, "ମୁଁ ଏଠାରେ ଥାଇ କଣ କରିବି ? ମତେ ତୋ ସଙ୍ଗରେ ନେ ।"

ଜୀବନ କହିଲା, "ତୁ ସେ ବଦ୍‌ମାସର ଖୋଜ ଖବର ନେବୁ । ମୁଁ ଭଲକରି ଜାଣିପାରୁଛି ଯେ, ଏ ସବୁ ସେ ଜମିଦାରର କାମ । ସେ କେବେ ରେଖାକୁ ସେଠାରେ ରଖିନାହିଁ । ନିଶ୍ଚୟ ଏଣେ ପଠାଇ ଦେଇଛି । ତୁ ଏଠାରେ ଥାଇ ସବୁ ବୁଝୁଥା । ମୁଁ ଯେ ଛାଏ ଧନ ମଧ୍ୟରେ ଫେରି ଆସିବି । ଏ କଣ ଗୋଟାଏ କାମ ନୁହେ ?"

ନବ ମଙ୍ଗିଲା । ତା ପରେ ଦୁହେଁ ଶୋଇବାକୁ ଗଲେ ।

—୨—

ନ' ପରଦିନ ସକାଳୁ ନବ ଉଠି ଜୀବନକୁ ଉଠାଇ ଦେଲା । ଜୀବନ ଶୀଘ୍ର ଉଠି ନିତ୍ୟକର୍ମ ସାରି ଜଳଖିଆ ପ୍ରସ୍ତୁତ କରି ହୋଇ ଚାଉଳର ଗାଁକୁ ବାହାରିଲା । ମଟର ଦ୍ରୁତ ଗତିରେ ଚାଲିଲା ବହୁତ ଲୋକଙ୍କୁ ନେଇ । ସେଥିରେ ଜୀବନ ବସାଇ ଦେଇଛି ନିଜର ବାଦ୍ୟଯନ୍ତ୍ର ।

ସେ ଭାବି ଚାଲିଛି, "ଗାଁକୁ ଯାଇ ପ୍ରଥମେ କଅଣ କରିବ ? ଜମିଦାରଙ୍କୁ କଣ ପଚାରିବ ? ଏ ସବୁର ଠିକ ଉତ୍ତର କିଏ ଦେବ । ତାହାକୁ ବା ପଚାରିବ ! ଟା ଲୋକେ ପଚାରିଲେ ସେ ବା କଣ ଉତ୍ତର ଦେବ ? ରେଖାକୁ ପାଇବ କେଉଁଠି ? ବଦମାସ୍‌, ଧମା ଲେଖ ଟହାଇ ପୁଣି ଏତେ ଅତ୍ୟାଚାର କରନ୍ତି । ସଇତାନ୍ ତତେ ମୁଁ ଉପଯୁକ୍ତ ଶିକ୍ଷା ନ ଦେଇ ଛାଡ଼ୁନାହିଁ । ରହୁବାବୁ, ରହୁବାବୁ ଅଉ ବେଶୀ ନାହିଁ, ଆଉ ଅଧଘଣ୍ଟାଏ, ତାପରେ ତୁମର ମୋର ସାକ୍ଷାତ । ଛାପରେ ଗୁଳି ଅଗ୍ନି, ତୁମର ମୃତ୍ୟୁ, ରେଖାର ଉଦ୍ଧାର । ଜୟଘୋଷାସରେ ମୋର ପ୍ରସ୍ଥାନ ହେବ । ହାଃ, ହାଃ, ହାଃ, ।"

ଜୀବନ ଅସ୍ଥିର ହୋଇ ଉଠିଲା, ଆଉ ଦଶ ମିନିଟ ବାକି ଅଛି । ସେ ବ୍ୟସ୍ତ ହୋଇ ଉଠିଲା । ବାହାରକୁ ଚାହିଁ ଦେଖିଲା,

ଦୁଇ ପାଖରେ ସବୁଜ ଧାନକ୍ଷେତ ଶୋଭାୟମାନ । ତାର ମଝିରେ ନାଲି ସଡ଼କଟି କାହିଁ କେତେଦୂର ଲମ୍ବି ଯାଇଛି । ତାରି ଉପରେ ଜୀର୍ଣ୍ଣ ଶୀର୍ଣ୍ଣ ମଟର ଖଣ୍ଡେ ଧୂଳି ଉଡ଼ାଇ ଗତି କରୁଛି । ପ୍ରାଣ ଭରି ଡାକ ଦେଇ । ଦୁଇ ପାଖରେ କୃଷକ ଶ୍ରାବଣର ଧାରା ବରଷା ସହି ଧାନ-କ୍ଷେତରେ ନିଜର ଅମୂଲ୍ୟ ଜୀବନଟିକୁ ଲୋଟାଇ ଦେଇଛନ୍ତି ଏବଂ ପ୍ରାଣଖୋଲା ଗୀତ ଗାଇ ଦେଶବାସୀଙ୍କ ମନରେ ନୂତନ ଦିନର ନୂତନ ଜାଗରଣ ଜନ୍ମାଉଛନ୍ତି । ଏ ସବୁ ପ୍ରାକୃତିକ ସୌନ୍ଦର୍ଯ୍ୟ ଦେଖି ଦେଖି ଜୀବନ କିଛି ସମୟ ପାଇଁ ସବୁ ଦୁଃଖ ଭୁଲିଗଲା । ହଠାତ୍ ଗାଡ଼ି ବନ୍ଦ ହୋଇଗଲା । ନରହରିବାବୁଙ୍କୁ ଉଠବୋଲି ଡ୍ରାଇଭର ଡାକ ଛାଡ଼ିଲା । ଡ୍ରାଇଭରର ଡାକରେ ଜୀବନର ଭାବନା ସ୍ରୋତ ଭାଙ୍ଗିଗଲା । ଜୀବନ ଯିବାକୁ ଉଠିଲା ଏବଂ ଧୀରେ ଧୀରେ ଚମଡ଼ା ସୁଟକେଶ ଧରି ଓହ୍ଲାଇ ପଡ଼ିଲା, ଗାଡ଼ି ଛାଡ଼ିଦେଲା ।

ବର୍ତ୍ତମାନ ଜୀବନ କରିବ କଅଣ ? ଗାଁ ଭିତରକୁ ଯିବ କିପରି ? କାହାକୁ ବା ପଚାରିବ, କିଏ ତା'ର ସବୁ ପ୍ରଶ୍ନର ଉତ୍ତର ଦେବ ? ଏମିତି ଭାବି ଭାବି ଜୀବନ ଚାଲିଲା ଗ୍ରାମ ଭିତରକୁ । ଗ୍ରାମଟି ଯଦିଓ ସହରଠୁ ଦୂରରେ ତଥାପି ଗ୍ରାମବାସୀମାନେ ଶିକ୍ଷିତ ଓ ସଭ୍ୟ । ସମସ୍ତେ କିଛି ନା କିଛି ବ୍ୟବସାୟ କରି ଜୀବନ ପୋଷଣ କରନ୍ତି । ଅଧିକାଂଶ ଧନୀ, ଦୁଃଖ କଣ ଗ୍ରାମବାସୀମାନେ ଜାଣନ୍ତି ନାହିଁ । ଆନନ୍ଦରେ ଦିନ କାଟୁଥାନ୍ତି । ହଠାତ୍ ଜୀବନର ନଜର ପଡ଼ିଲା ତା'ର ଘର ଉପରେ । ଘରର ରଙ୍ଗ ବର୍ଣ୍ଣ ନାହିଁ । ତା ପରିବର୍ତ୍ତେ ବଗିଚା, ନାନା ଜାତିର ଫଳ ଫୁଲ ଭରା । ମାଳୀମାନେ ଗଛରେ ପାଣି ଦେଉଅଛନ୍ତି । ଜୀବନ ଉତ୍ସୁକ ହୋଇ ଉଠିଲା । ବାହେଇ ବାକୁ ବାହାରିଲା, କିନ୍ତୁ ଫାଟକ ପାଖରେ ପହଞ୍ଚିବା ମାତ୍ରେ

ତାର ପ୍ରକୋପ କମିଗଲା । ସେ ଧୀର ସ୍ୱରରେ ଡାକିଲେ, "ଜଗୁଆ ଜଗୁଆ ।"

ଜଗୁଆ ପାଣି ଦେଉଥିଲା । ଜୀବନଙ୍କୁ ଦେଖି "ଆସ ଜୀବନବାବୁ ଆସିଲେଣି, ଧାଇଁ ଆସ" ବୋଲି କହି ଦଉଡ଼ି ଆସିଲା । ଜୀବନର ଗୋଡ଼ ତଳେ ସମସ୍ତେ ଲମ୍ବ ହୋଇ ପଡ଼ିଗଲେ ।

ତାପରେ ଜୀବନ କହିଲା, "ଜଗୁଆ ତୋ ସଙ୍ଗରେ କଥା ଅଛି ।"

ସେ କହିଲା, "ଭିତିରି ଘରକୁ ଆସନ୍ତୁ ।"

ଜଗୁଆ ଏବଂ ଜୀବନ ଭିତିରି ଘରକୁ ପଶିଲେ, ଅନ୍ୟମାନେ ଯେ ଯାହା କର୍ମରେ ଲାଗିଗଲେ । ଭିତିରି ଘରେ ଜଗୁଆ, ଜୀବନଙ୍କୁ ଖଣ୍ଡିଏ ଚଉକି ଦେଇ ବସିବାକୁ ଅନୁରୋଧ କଲା । ଜୀବନ ତାହା କଥା ରକ୍ଷା କରିବାକୁ ଯାଇ ଚଉକିଟିରେ ବସିଲା ଏବଂ ଜଗୁଆ ତଳେ ବସି ପଚାରିଲା, "କି କଥା" ?

ଜୀବନ କହିଲା, "ଜଗୁଆ ମୁଁ ଯାହା ପଚାରିବି ଠିକ୍ ତାର ଉତ୍ତର ଦେବୁ । ନୋହିଲେ ତୋର ଦଶା ଯାହା ହେବ ତାହା ତୁ ଜୀବନରେ ଭୁଲିବୁ ନାହିଁ ।"

ଜଗୁଆ କହିଲା, "ଆପଣଙ୍କ କଥା ଅମାନ୍ୟ କରିବ ଏ ଜୀବନରେ କେବେ ନାହିଁ । ଆପଣ ତାହା ଶୁଣ । ସେ ଉମେଦ-ଖାସମ୍ ଗୁପ୍ତ ଭାବରେ କେତେ ବଡ଼ ଲୋକଙ୍କୁ ମାରିଲା । ଅନେକ ଅଜ୍ଞା, ତାଙ୍କ ପ୍ରଜା । ଆମକୁ ସେ ଯାହା କହିଲା, ସେଥିରେ ଅନେକ ବାଧା । ଆପଣଙ୍କ ପିତାମାତାଙ୍କର ମୃତ୍ୟୁ ଖବର ଲୁଚାଇ ରଖିଲା କେବଳ ତା ପେଟରେ । ଆପଣଙ୍କ ସ୍ନେହର ଭଉଣୀକୁ କୁଆଡ଼େ ନେଇ ରଖିଲା, ସେଥିରେ ମଧ୍ୟ ରୂପ୍ ଖୋଇ ରହିଲା । ଶେଷକୁ ଆପଣଙ୍କ ଘର ଭାଙ୍ଗି ଏ ଜମିରେ ଘେରାଗୁ କଲେ । ଆମକୁ ସେଥିରେ ଦିନସାରା ଖଟାଇଲେ । ସବୁ ସହିଲୁ, ଏ ଥର ଆଉ

ସହିପାରୁ ନାହିଁ । ଆମର ଆଖି ଖୋଲିଛି । ଆମ୍ଭେମାନେ ଆପଣଙ୍କୁ ଚାହୁଁଛୁ । ଅନୁମତି ଦିଅ, ଜୀବନବାବୁ, ସମସ୍ତେ ମିଶି ତାର ଘର-ଦ୍ୱାର ଭାଙ୍ଗି ଚୂନା କରିଦେବୁ ।"

ଜୀବନ ସବୁ ଜାଣି ପାରିଲେ । ଏମାନଙ୍କର କିଛି ଦୋଷ ନାହିଁ । ସେ ଜଗୁଆକୁ କହିଲେ, "ଆରେ ଜଗୁ ତୁ ସ୍ଥିର ହୋ । ମୁଁ ତାର ପ୍ରତିକାର କରିବି । ଅଚ୍ଛା କହିଲୁ, ଜମିଦାର ଅଛନ୍ତି କି ନାହାନ୍ତି ?"

"କିଏ ? ସେ ବଦମାସ ? ନା, ସେ ଏଠାରେ ନାହିଁ । ଦୁଇ-ଦିନ ହେଲା କୁଆଡ଼େ ଯାଇଛି । ତାର ଚପରାଶି ଯୋଗେନ୍ଦ୍ର ଅଛି ।" ଜଗୁଆ ଉତ୍ତର ଦେଲା ।

ଜୀବନ କହିଲେ, "ଅଚ୍ଛା ହେଉ, ମୁଁ ତ ଗ୍ରାମକୁ ଆସିଛି । ଏଠାରେ ଅଳ୍ପ ଦିନ ରହିବି । ଆଜି ରାତି ଦଶଟାବେଳେ ତମ ପାଖକୁ ଡାକିବାକୁ ଜଣକୁ ନେଇ ଆସିବୁ । ଜମିଦାରଙ୍କ ଘରକୁ ଯିବା । ତୁ ଏକଥା କାହାକୁ କହନା, ମୁଁ ଟିକିଏ ଗାଁ ଭିତରେ ବୁଲି ଆସେ ।"

ଜଗୁଆ ହଁ କରି ଚାଲିଗଲା । ତାପରେ ଜୀବନ କିଛିକାଳ ଲଗା-ପଟା ସେଠାରେ ଘଣ୍ଟି ଟାଙ୍କୁ ବୁଲିବାକୁ ଗଲେ । ଯେ ଜୀବନଙ୍କୁ ଦେଖୁଥାଏ ସେ ବହୁତ କଥା ପଚାରେ, ତାଙ୍କୁ ଅସ୍ଥିର କରି ପକାଉଥାଏ । ପିଲେ, ମାଇପେ, ବୁଢ଼ା, ବୁଢ଼ୀ ସମସ୍ତେ ଜୀବନଙ୍କୁ ପ୍ରାଣଠାରୁ ଅଧିକ ଅଧିକ ସ୍ନେହ କରନ୍ତି, କେବଳ ଜମିଦାରଙ୍କ ଛଡ଼ା ।

ଗ୍ରାମବୁଲା ଜୀବନଙ୍କ ସରିଗଲା, କିଛି ଖବର ପାଇଲେ ନାହିଁ । ସମସ୍ତଙ୍କୁ ପଚାରିଲେ, କିନ୍ତୁ କେହି କିଛି ଉତ୍ତର ଦେଲେ ନାହିଁ । ଜୀବନ ଭାବିଲେ, ଜମିଦାର କଣ ସମସ୍ତଙ୍କୁ ହାତ କରି ରଖିଛି ? ସମସ୍ତେ କଣ ତାର ଭୟରେ କିଛି କହୁ ନାହାନ୍ତି ? ଜମିଦାର କେବେ କି ଭୟ ତାଙ୍କୁ ଦେଖାଇଛି !"

ଶୁନ୍‌—ଜୀବନ ଚମକି ଉଠିଲା । ତାର ଦେହ ଅଜଣା ଆଶଂକାରେ ଥର ଉଠିଲା, ସେପଟକୁ ନିସ୍ପନ୍ଦ ହୋଇ ଫେରି ଆସିଲା ରଟିରୁକ । ଖାଇବାକୁ ବାହାରିଲା, କିନ୍ତୁ ଖାଇ ପାରିଲା ନାହିଁ । ଟେଜବ ଚ ହେଉଛି, କରିବ ବା କଣ ? ବାଧ୍ୟ ହୋଇ ଗଣ୍ଡେ କିଛି ଖାଇ ଦେଇ ବିଛଣାରେ ପଡିଗଲା, କେତେବେଳେ ତାକୁ ନିଦ ଆସିଲା ଜଣା ନାହିଁ । ନିଦ ଭାଙ୍ଗିଲା ବେଳକୁ ଦେଖେ ତ ରାତି ହୋଇପାଇଛି । ଆଲୁଅଟି ଲଗାଇ କିଛି ସମୟ ବସିବା ପରେ ଜଗୁଆ ଆଉ ଜଣେ ଲୋକ ସହିତ ଆସି ଜୀବନ ପାଖରେ ପହଞ୍ଚିଲା ।

ସାଧାରଣତଃ ମଫସଲର ଲୋକେ ନବ୍ବୁ ହେଲେ ରାତି ଦଶଟା ପର୍ଯ୍ୟନ୍ତ ଗୃହାନ୍ତି । ତାର ପରେ ଶୋଇ ପଡନ୍ତି । ରାତି ଏଗାରଟା ବାଜିଲା, ଗ୍ରାମ ନିସ୍ତବ୍ଧ, ଜଗତ ସୁପ୍ତ, ଉପରେ ତାରକାଗଣ ଅର୍ଦ୍ଧ-ମୁଦ୍ରିତ ମେଲାଇ ପୃଥିବୀଆଡ଼କୁ ଏକ ଦୃଷ୍ଟିରେ ଚାହିଁଛନ୍ତି । ଜୀବନ ତାର ବିଳମ୍ବ ନ କରି ଉଠି ଠିଆ ହେଲା । ଚମଡ଼ା ସୁଟ୍‌କେଶଟି ପିଟାଇ ଦେଇଛନ୍ତି ବାହାର କାନ୍ଥ ଏବଂ ତାକୁ ସେଣ୍ଡୁ ପକେଟରେ ପୂରାଇ ଟର୍ଚ୍ଚଟି ଧରି ଆଗେ ଆଗେ ଚାଲିଲା । ପଛରେ ଜଗୁଆ ଏବଂ ଫଗୁଆ ଦୁଇ ବିଶାଳ ମୂର୍ତ୍ତି, ଦୁଇଟି ଠେଙ୍ଗା ଧରି ଛୁଇଁଲେ କୁକୁର ପରି ଚାଲିବାକୁ ଲାଗିଲେ । ନିଶା ସାଇଁ ସାଇଁ ଗର୍ଜୁଛି । କିଛି ବାଟ ଗଲା ପରେ ଭଞ୍ଜନଗର ଜମିଦାରଙ୍କ ଘର ସମ୍ମୁଖରେ ଆସି ପହଞ୍ଚିଲେ । ରୁଦ୍ଧ ଅଙ୍କୁ ଜନାଇ ଜୀବନ ଫାଟକ ଖୋଲି ଭିତରକୁ ପଶିଲା । ପଛେ ଦୁହେଁ ମଧ୍ୟ । କ୍ରମେ ଘର ପାଖକୁ ଆସିଲେ ।

ଜୀବନ କହିଲା, "ଜଗୁଆ ତୁମେ ଦୁହେଁ ଏହିଠାରେ ଥାଅ । ମୁଁ ଭିତରକୁ ଯାଉଛି । ଯେ ଭିତରକୁ ଆସିବ ବାଡ଼ି ଚଳାଇବ ।"

ଏହା କହି ଜୀବନ କବାଟ ମେଲା କରିବା ପାଇଁ ଚେଷ୍ଟା କଲା । କିନ୍ତୁ ଭିତରୁ କବାଟ ଦିଆହୋଇଛି । ଶେଷକୁ ନିରାଶ ହୋଇ ଫେରି ଆସିଲା ଜଗୁଆ ପାଖକୁ । ଜଗୁଆକୁ ପଚାରିଲା, "ଜଗୁଆ ବାଡ଼ କବାଟ ମେଲା ଥିବ, ତାର ବାଟ କୁଆଡ଼େ ?" ଜଗୁଆ, ସଗୁଆକୁ ଡାକି ଦେଇ ଜୀବନକୁ ଧରି ବାଡ଼ ଆଡ଼କୁ ଆସିଲା । ବାଡ଼ କବାଟ ମେଲା ଥିଲା । ସେଠାରେ ଜଗୁଆକୁ ଛାଡ଼ି ଜୀବନ ଏକୁଟିଆ ଘରେ ପଶିଲା । ଦୁଆର ପରେ ଦୁଆର ଅତିକ୍ରମ କଲା । ଦୁଇ ତିନିଟା ଦୁଆର ଅତିକ୍ରମ କରି ଜୀବନ କପଠକୁ ଠେଲି ପକାଇଲା, କିନ୍ତୁ ଦେଖି ଭିତରୁ କବାଟ ବନ୍ଦ, ଜୀବନ ଆସି ପହଞ୍ଚିଲା ଉପର ଘର ଦୁଆରେ । ପାରିଲା ନାହିଁ । କପର ଉପରକୁ ଯିବ । ଉପରେ ଜମିଦାରଙ୍କ ଡ୍ରଇଂ ରୁମ୍ । ଜୀବନ ମନ ଦୁଃଖରେ ଫେରି ଆସୁଥିଲା । ହଠାତ୍ ତାର ନଜର ପଡ଼ିଲା ସିଡ଼ି ଉପରେ । ସେ ବାଉଁଶ ସିଡ଼ିଟାକୁ ନେଇ କାନ୍ଥରେ ଲଗାଇଲା ଏବଂ ଧୀରେ ଧୀରେ ଉପରକୁ ଚଢ଼ିଲା ।

ଉପର ଘର ବାରଣ୍ଡାକୁ ଆସି ଦେଖିଲା ଉପରେ ଆଠଟା ଘର । ମଝିଘରଟା ଡ୍ରଇଂ ରୁମ୍ । ଜୀବନ ଦେଖିଲା ସବୁ ଘର, ଭିତରୁ ବନ୍ଦ ଏବଂ ଡ୍ରଇଂ ରୁମର ବାହାରୁ ତାଲା ପଡ଼ିଛି । ସେ ଧୀରେ କରି ଛୁରି ବାହାର କଲା । ଗୋଟିକ ପରେ ଗୋଟିଏ ଲଗାଇଲା । ଶେଷକୁ ହଠାତ୍ ଦୁଆର ଖୋଲିଗଲା । ଜୀବନ ଭିତରେ ପଶି ଭିତରୁ କବାଟ ଦେଇ ଦେଲା । ତା ପରେ ଟର୍ଚ୍ଚଟା ମାରି ଦେଖିଲା ଘରଟି ନାନା ସୌଖିନ ସୌଖିନ ଜିନିଷରେ ସଜା ହୋଇଛି । ବହୁତ ପ୍ରକାର ଆଲମାରୀ, କାନ୍ଥ ଆଲମାରୀ, ଟେବୁଲ, ଚୌକି, ଖାଲିଗୃହରେ ଘରଟି ପୂର୍ଣ୍ଣ । ଟେବୁଲ ଉପରେ ବହୁତ କାଗଜ ପତ୍ର ଥୁଆ ହୋଇଛି । ଜୀବନ ଗୋଟି ଗୋଟି କରି

ଦେଖିଗଲା । ତନୁ ଦା. ଭିତରୁ କିଛି ପାଇଲା ନାହିଁ । ଶେଷକୁ ତାର ନଜର ପଡ଼ିଲା ଗୋଟିଏ ଛପା କାଗଜ ଉପରେ । ଓଲଟା ହୋଇ ଛପା ହୋଇଛି । ଜୀବନ ଶୀଘ୍ର କାଗଜ ଖଣ୍ଡକ ବାହାର କରି ଦେଖିବାରେ ଲାଗିଲା । କିଛିକ୍ଷଣ ପରେ ଲେଖା ସରିଗଲା । ଜୀବନ ପଢ଼ିବାରେ ଲାଗି ଗଲା—ଲେଖାଅଛି

ମାନନୀୟ

କଲିକତା ବଡ଼ବଜାର ଷ୍ଟ୍ରୀଟ୍
ଘର ନମ୍ବର ୫୭
ତା ୭ । ୩ । ୪୧

ଏହି ବାଳକଙ୍କୁ ମୋ ଲୋକ ହାତ ପଠାଇଲି ଏବଂ ମୁଁ ଦୁଇଦିନ ପରେ ଯାଉଛି । ଏହାଙ୍କୁ ତୁମପାଖରେ ରଖିଥିବା । ଇତି ।

ତୁମ୍ଭର
ରଘୁବାବୁ

ଚିଠିଟି ପଢି ଜୀବନ ଥକା ମାରି ହୋଇ ବସି ପଡ଼ିଲା । ତା ଯାଇଥିବା ଜାଗା ବାହାରିଲା ନାହିଁ । ସେ କିଛିକ୍ଷଣ ପରେ ଉଠି ସିଡ଼ିରେ ଓହ୍ଲାଇବାକୁ ଲାଗିଲା । ସିଡ଼ିରେ ଓହ୍ଲାଉଛି ଏହି ସମୟରେ ଜମିଦାରଙ୍କ ଗୁମାସ୍ତା ବାହାରକୁ ଯାଉଛି । ସେ ସାଙ୍ଗରେ ଆଉ ଜଣେ ସିଡ଼ି ବାଟେ ଓହ୍ଲାଇ ଯାଉଛି ଦେଖି ଛୁରୀ ପକାଇଲା । ଜୀବନ ସଙ୍ଗେ ସଙ୍ଗେ ତଳକୁ ଆସି ସିଡ଼ିଟି ବାନ୍ଧି ଦେଲା । ସମସ୍ତେ ଉଠିଲା ବେଳକୁ ଜୀବନ ଗୁମାସ୍ତା ଓ ପଗୁଆକୁ ନେଇ ବଡ଼ିଘର ଆସିଲା ଏବଂ ରୁଷ୍ଟ ହୋଇ ଶୋଇ ରହିଲା । ଗୁମାସ୍ତା ପଚାରିଲା, "ବାବୁ କ'ଣ ହେଲା"? ଜୀବନ

ସବୁ ଠିକ୍ ଅଛି, "ଭଲ ! ସକାଳୁ ଉଠି ତୁମେ ତୁମ ଘରକୁ ଚାଲିଯିବ, ଯେ ଯାହା ପଚାରିବେ କେହି କିଛି କହିବ ନାହିଁ ।"

ସକାଳୁ ଭଗୁଆ ଉଠି ଚାଲିଗଲା । ଜୀବନ ସକାଳୁ ଉଠି ନିତ୍ୟକର୍ମ ସାରି ସୁଟ୍‌କେଶ୍‌ରୁ ପାଉଁରୁଟି କିଛି ଖାଇଲା । ତାପରେ ମାଣି ଦିଇ ଗାଁ ଭିତରକୁ ଆସେଇଲା । ସେ ଯାହା ଭାବିଥିଲା, ତାହା ନିଜ ଆଖିରେ ଦେଖି ପାରିଲା । ଗାଁରେ ଠାକୁ ଠା ସଭା ବସିଛି, ପିଲାଙ୍କ ସଭା, ବୁଢ଼ାଙ୍କ ସଭା, ଟୋକାଙ୍କ ସଭା, ଗାଁ ମାଇପିଙ୍କ ସଭା । ସବୁଠାରେ ଗାଲି ରାତିରେ ଜମିଦାରଙ୍କ ଘରୁ ଚୋରି ଯିବା କଥା ପଡ଼ୁଛି । କିଏ କହୁଛି, ଗୋଟାଏ ଡେଙ୍ଗା ଲୋକ କଳା ପୋଷାକ ପିନ୍ଧି ଚୋରି କରିବାକୁ ଯାଇଥିଲା । କିଏ କହୁଛି ହାତରେ ଗୋଟିଏ ପିସ୍ତଲ ଧରିଥିଲା, କିଏ କହୁଛି ତା ହାତରେ ଗୋଟିଏ ଖାପ୍ ଛୁରୀ ଚକ ଚକ କରୁଥିଲା । ଏହିପରି ନାନା ଆଲୋଚନାରେ ଗ୍ରାମ ସାରା ପୂର୍ଣ୍ଣ ହୋଇଥିଲା । କିଛି ସମୟ ପରେ ଗ୍ରାମରେ ଦାରୋଗା ଏବଂ କନେଷ୍ଟବଲମାନେ ଆସି ପହଞ୍ଚିଲେ । ବହୁତ ଲୋକଙ୍କଠାରୁ ଜବାନ ବନ୍ଦୀ ନିଆଗଲା । କିନ୍ତୁ ସଠିକ ଉତ୍ତର ମିଳିଲା ନାହିଁ । କିଛି ସମୟ ପରେ ଜୀବନ ଦରିଗୁ ଘରକୁ ଫେରି ଆସିଲା । ସେଦିନ ସେ ଠିକ୍ କଲା ଗ୍ରାମ ଛାଡ଼ି ଚାଲିଯିବ । ଯେତେ ଶୀଘ୍ର ଯାଏ ସେତେ ଭଲ । ଏହା ଭାବି ସେହିଦିନ ସହରକୁ ଫେରି ଆସିଲା ।

ନନ୍ଦ ତାହା ପାଇଁ ଅପେକ୍ଷା କରିଥିଲା । ଜୀବନକୁ ଦେଖି ପଚାରିଲା, "ବନ୍ଧୁ, ଖବର କଣ ?"

ଜୀବନ କହିଲା, "ଖବର ବହୁତ ଅଛି" କହି ଲାଗି ସବୁ ବଦଳାଇ ସବୁକଥା କହିଗଲା । ଚିଠିଟି ବାହାରି ମଧ୍ୟ ଦେଖାଇଲା ।

ନବ ଚିଠିଟି ଦେଖି ଆଶ୍ଚର୍ଯ୍ୟ ହୋଇ କହିଲା, "ଜଟିଆର ଏପରି ହୋଇପାରେ ?"

ଜୀବନ କହିଲା, "ଦେଖୁଛୁ ତ !"

ତାପରେ ଦୁଇବନ୍ଧୁ ସ୍ଥିର କଲେ ପରଦିନ ସକାଳ ଗାଡ଼ିରେ କଲିକତା ଯିବେ । ରାତିରେ ସବୁ ଜିନିଷପତ୍ର ସଜଡ଼ା ସଜଡ଼ି କରିବାରେ ଲାଗିଲେ । ଗଣ୍ଡାଏ ଗଣ୍ଡାଏ ଖାଇ ଦେଇ ଦୁଇବନ୍ଧୁ ବିଛଣାରେ ପଡ଼ିଗଲେ ।

ତା' ପରଦିନ, ଟ୍ରେନ୍ ଷ୍ଟେସନରୁ ଦୁଇବନ୍ଧୁ ଛୁଟି ନିଜ ନିଜର କାର୍ଯ୍ୟକର୍ମ ସାରିବାକୁ ଗଲେ । ପନ୍ଦର ମିନିଟ ମଧ୍ୟରେ ସବୁ କାମ ସାରି ଦୁହେଁ ଡ୍ରେସିଂ ରୁମ୍‌ରେ ପଶିଲେ ଏବଂ ଦୁଇଟା ମୁସଲମାନ ବେଶ ଧରି ବାହାରି ଆସିଲେ । କିଏ କହିବ ଯେ ଜୀବନ ଏବଂ ନବ ଏ ରୂପ ଧରିଛନ୍ତି ବୋଲି । ବେଶ ଟ୍ରେନ୍ ନିର୍ଘଣ୍ଟ ଭାବରେ ଥିଲା । ସମୟରେ ତିନିହେଁ ଷ୍ଟେସନକୁ ବାହାରିଲେ । ନବ ଦୁଇ ବନ୍ଧୁଙ୍କର ଏପରି ବେଶ ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ଡାକିଲା "ବାବୁ !" ଜୀବନ ବୁଝି ପାରିଲା, କହିଲା, "ବୁଝିପାରୁ ନାହିଁ କରିହବ । ଆମେ ଯଦି ଏ ଛଦ୍ମବେଶରେ ନ ଯାଉ ତେବେ ଧରା ପଡ଼ିଯିବୁ । ଦସ୍ୟୁ ଦଳର ଲୋକେ ତ ଗୋଟାଏ ସ୍ଥାନରେ ନାହାନ୍ତି, ସେମାନେ ଚାରିଆଡ଼େ ବୁଲୁଛନ୍ତି । ଜଲ୍ଦି ଶୀଘ୍ର ଚାଲ । ଡେରି ହୋଇ ହୋଇଗଲାଣି ।" ତିନିହେଁ ଖଣ୍ଡିଏ ଟ୍ୟାକ୍ସିରେ ବସି ପଡ଼ିଲେ ଟ୍ୟାକ୍ସି ଛୁଟିଲା ଷ୍ଟେସନ ଅଭିମୁଖେ ।

ପ୍ରାୟ ୧୫ ମିନିଟ ପରେ ଟ୍ୟାକ୍ସି ପହଞ୍ଚିଲା ଷ୍ଟେସନରେ । ଜୀବନ ଟାକ୍ସି ଭଡ଼ା ଚୁକାଇ ଦେଲା । ତିନିହେଁ ପ୍ଲାଟଫର୍ମ ଉପ-

ଚଳି ପଶିଲେ । ଯାତ୍ରୀଙ୍କ କମତି ନ ଥିଲେ । ଗାଡ଼ି ଅସିବାକୁ ଡେରି ଥିଲା । ତେଣୁ ଯାତ୍ରୀମାନେ ପ୍ଲାଟଫର୍ମରେ ଏକତ ସେକଡ଼ ହେଉଥିଲେ । ସେମାନଙ୍କର କୋଳାହଳରେ ଷ୍ଟେସନ ମୁଖରିତ ହେଉଥିଲା । ନରହରିଙ୍କୁ ବିଦାୟ ଦେଇ ଦୁଇବନ୍ଧୁ ପ୍ଲାଟଫର୍ମ ଉପରକୁ ଗଲେ ।

ଜୀବନ କହିଲା, "ନବ, ଗୁହା ଟିକିଏ ଦିଆଯାଉ ?" ନବ କହିଲା । 'ହଉ', ଦୁଇବନ୍ଧୁ ଗୋଟିଏ ହୋଟେଲ ଭିତରେ ପଶିଲେ । ଦେଖିଲେ ଦୁଇଜଣ ମୁସଲମାନ ଭଦ୍ରଲୋକ ଗୋଟିଏ ଟେବୁଲ ପାଖରେ ବସି କଥାବାର୍ତ୍ତା ହେଉଛନ୍ତି ଏବଂ ଗୁହା ଖାଉ-ଛନ୍ତି । ଜୀବନ ଏବଂ ନବ ମଧ୍ୟ ପାଖରେ ଥିବା ଗୋଟିଏ ଟେବୁଲ ପାଖରେ ବସି ଗୁହାର ବରାଦ କଲେ । ଗୁହା ଆସିଲା । ନବ ଓ ଜୀବନ ଗୁହା ଖିଆ ଆରମ୍ଭ କଲେ । ତାଙ୍କ କର୍ଣ୍ଣ କୁହରରେ ଦୁଇ ଭଦ୍ରଲୋକଙ୍କ କଥା ଆସି ପଡ଼ୁଥାଏ ।

ଜଣେ କହିଲା, "ବୁଝିଲୁ ରହମନ୍ ।"

ଅନ୍ୟଜଣେ କହିଲା, "ନ କହିଲେ ବୁଝିବି କେମିତି ?"

ପ୍ରଥମ ଜଣକ କହିଲା, "ନରହରିପୁରର ରଘୁ ଚୌଧୁରୀକୁ ଜାଣୁ ।"

"ଅଲବତ ଜାଣେ ନା, କହଲ କଥା, ଏ ହେଲା କଣ ।"

ଅନ୍ୟ ଜଣକ ଉତ୍ତର ଦେଲା ।

ସେ ପୁଣି ଆରମ୍ଭ କଲା । ଜମିଦାର ମୋ ମାରଫତରେ ଗୋଟିଏ ଚିଠିକୁ ପଠାଇଥିଲେ । ସେ ଚିଠିକୁ ମୁଁ ଠିକ ସ୍ଥାନରେ ପହଞ୍ଚାଇ ଦେଇଛି । ମୋତେ ସେଥିଁ ନକ୍ରିସ୍ତ ଟେଲିକରେ ଅନ୍ୟ ଜଣ କହିବ, ଏକ ହଜାର ଟଙ୍କା । ପୁଣି ଅଳ୍ପ କହନ୍ତି ଯଦି ଜୀବନର ମୂଲ୍ୟଟା

ଅଣିଦେବ, ତେବେ ୫ ହଜାର ମିଳିବ । ଏତେ ଟଙ୍କା ପାଇଲେ ସିନା ଆମର ବଂଶ ବଞ୍ଚାଇବା । ନୋହିଲେ କେବଳ ଉପରେ ବୁଲିଲୁ, ମୁଁ ଆଜି ଅଧିକା ପାଇଁ କହୁଛି । ସେ କହୁଛନ୍ତି ଯେ, ସେ ହିଁ ଅଳ୍ପ କବାଟ ଭଙ୍ଗସାରିବା ପରେ ଅଧିକ ଟଙ୍କା ଦେବେ ।

ଜୀବନ ଏ କଥା ଶୁଣିବାକୁ ଅଗ୍ରହ ହୋଇ ବସି ରହିଲା । ସେ ଭାବିବାକୁ ଲାଗିଲା ଯେ, ସେ ଦସ୍ୟୁମାନଙ୍କୁ ଠିକ ସ୍ଥାନରେ ଅଘାତ କରିପାରିବ ।

ଅନ୍ୟ ଜଣକ ଜୀବନ ଆଡ଼କୁ ଚାହିଁ କହିଲା, "ଅଚ୍ଛା ଯଦି ସେଠା ପଛରେ ପଛରେ ସେ ଲାଗିଥାଏ ?"

"ସେ ପାଗଳ ନାଁ ଜଣ, ଜୀବନ, ସେ ଜାଣେ କଅଣ । କେଉଁଠାଏ ତାର ଏତେ ମୁଣ୍ଡ କାହିଁ ଯେ ଆମପରି ଡାକୁର ପଛରେ ଲାଗିବ । ଅସମ୍ଭବ !" ସେ ମୁସଲମାନଟି କହିଲା ।

ଏହି ସମୟରେ ଗାଡ଼ି ଅଟକି ପହଞ୍ଚିଗଲା । ଜୀବନ ଏବଂ ନବ ଓହ୍ଲାଇଲେ । ଭଦ୍ରଲୋକ ଦୁଇଜଣ ମଧ୍ୟ ଓହ୍ଲାଇଲେ । ଗୋଟିଏ ଇଣ୍ଟର କ୍ଲାସରେ ଜୀବନ ଏବଂ ନବ ପଶିଲେ ଏବଂ ସେଥିରେ ରହମନ୍ ଏବଂ ତାର ଅନ୍ୟ ଲୋକଟା ମଧ୍ୟ ଚଢ଼ିଥିଲେ ।

ଜୀବନ ନବକୁ ଡାକି କହିଲା, "ଦେଖ, ହୁସିଆର । ଗୋଲ ମାଲ୍ କରିବୁ ନାହିଁ । ମୋର ସଙ୍ଗେ ଏକାଠି ବାଟେ ଯାଉଛୁ । କିଛି କହିବୁ ନାହିଁ ।"

ନବ କହିଲା, "ତୁମେ ତ ବୁଦ୍ଧି ଶିଖାଉଛ ଜୀବନ, ମୁଁ କଣ ତା ଜାଣେ ନାଁ !" । ଦୁଇବନ୍ଧୁ ଗାଡ଼ିରେ ବସିଲେ ।

ଗାଡ଼ି ଚାଲିଲା ପୂର୍ଣ୍ଣବେଗରେ । ଷ୍ଟେସନ ପରେ ଷ୍ଟେସନ ଅତିକ୍ରମ କରି ଗାଡ଼ି ଚାଲିଥାଏ । ଜୀବନ ଏବଂ ନବ ଚୁପ ହୋଇ ବସିରହିଥାଆନ୍ତି । କେତେକ ଷ୍ଟେସନ ପରେ ରହମନ୍ ଜୀବନଙ୍କୁ ପଚାରିଲା, "ଆପଣ କୁଆଡ଼େ ଯିବେ [ ଅବଶ୍ୟ ହିନ୍ଦିରେ ]" ଏବଂ ଜୀବନ ମଧ୍ୟ ହିନ୍ଦିରେ ଉତ୍ତର ଦେଲା "କଲିକତା" ।

"ସେ କିଏ ?" ରହମନ୍ ପଚାରିଲା ।

"ମୋର ଜଣେ ବନ୍ଧୁ" । ଜୀବନ ଉତ୍ତର ଦେଲା ।।

"ତୁମ ନାମ କଣ, ରହୁଛ କେଉଁଠି !" ରହମନ ପଚାରିଲା ।

ଜୀବନ କହିଲା, "ମୋର ନାମ ଅସଫଳ । ମୁଁ ବୁଲିଯାଉଛି । ପ୍ରଥମେ ଗୋଟାଏ ହୋଟେଲରେ ଏବଂ ପରେ ଗୋଟିଏ ଘରଭଡ଼ା କରି କିଛିଦିନ ପାଇଁ ରହିବ ।"

ଏହିପରି କଥାବାର୍ତ୍ତା ହେଇ ହେଇ କେତେ କଥା ପଡ଼ିଗଲା । ସମସ୍ତେ ସମସ୍ତଙ୍କ ନାମ ଜାଣିଲେ । ଅଳ୍ପେ ଅଳ୍ପେ ବନ୍ଧୁ ତିନିଜଣଙ୍କ ମଧ୍ୟରେ ଘନିଷ୍ଠ ବନ୍ଧୁତା ହୋଇଗଲା । ରହମନ୍ କହିଲା, "କଲିକତା ବଡ଼ବଜାର ଷ୍ଟ୍ରିଟରେ ନଂ ୫୭୯ ନୂଆ ଘରେ ମୁଁ ଅଛି । ସେଠାରେ ମୋର ଦେଖା ପାଇବ । ବାହାରୁ ଦେଖିଲେ ସେଇଟା ଅବସ୍ଥିତ ଜଣାପଡ଼ିବ ନାହିଁ । ଏକ ମହଲା ଭଙ୍ଗା ଦଦରା କୋଠା ଘର । କିନ୍ତୁ ଭିତରକୁ ମୁଁ ନେଇଯିବି ଏବଂ ତା ଭିତରକୁ ଗଲେ ତୁମ ଆଖି ଝଲସି ହୋଇଯିବ । ବହୁତ ପ୍ରକାର ପଦାର୍ଥ ସେଠାରେ ଅଛି, ଯାହାକି ତୁମେ ଜୀବନରେ ଦେଖି ନ ଥିବ । ସେଠାକୁ ଯାଇ ମୋ ନାମ କହିଲେ ସେଠାରେ ଯେଉଁ ଲୋକ ଥିବ ସେ ଭିତରକୁ ଛାଡ଼ି ଦେବ । ସିଧା ଭିତରକୁ ପଶିଯିବ । ସେଠାରେ ମତେ ନିଶ୍ଚୟ ପାଇବ ବୁଝିଲ ।"

ଏହାପରେ କଥାବାର୍ତ୍ତା ହେଉ ହେଉ ଗାଡ଼ି ଆସି ପହଞ୍ଚିଲା, ଖଡ଼ଗ୍ପୁରରେ । ରାତି ୧୨ଟା । ଗାଡ଼ି ବହୁତ ସମୟ ରହୁ ନାହିଁ ।

ସମସ୍ତେ ନିଦ୍ରାରେ ଅଚେତନ । ଏକା ଜୀବନ ନୁହେଁ, ସେ ତାହାର ଭବିଷ୍ୟତ କଳ୍ପନା କରୁଛି । ବହୁତ ବେଳପରେ ଜୀବନ ଉଠି ଠିଆ ହେଲା । ସୁଟକେସ୍ଟି ଫିଟାଇ ଚୋଟାଏ ଛୁରି ବାହାର କଲା । ଭୟଙ୍କର ଧାର । ଶୁଙ୍ଘାଇ ଦେଲେ ମନୁଷ୍ୟର ବଞ୍ଚି ରହିବାର ଆଶା ନାହିଁ । ଜୀବନର ହାତ ଥରିଲା । ଗଲାନାହିଁ ପ୍ରଥମେ ଏତେ ବଡ଼ ପାପକାମ କରିବାକୁ । କିନ୍ତୁ ବଦମାସ୍ମାନଙ୍କୁ ଉଚିତ ଶାସ୍ତି ଦେଲେ ତାର ଜୀବନ ଶାନ୍ତି ହେବ ନାହିଁ । ତାର ମନସ୍କାମ ପୂର୍ଣ୍ଣ ହେବ-ନାହିଁ । ଉତ୍ୟକ୍ତ ହୋଇ ଉଠିଲା ସେ । ଧୀରେ ଧୀରେ ସେ ରହମନ୍ ଏବଂ ତାର ବନ୍ଧୁ ନିକଟକୁ ଗଲା । ନାକ ପାଖରେ ହାତ ରଖିଲା । ନିଶ୍ଚିନ୍ତ ନିଦରେ ଶୋଇଛନ୍ତି । ପ୍ରଥମେ ରହମନ୍‌ର ବନ୍ଧୁ ନିକଟକୁ ଯାଇ ଛୁରିଟି ଖୋଲିଲା । ସଙ୍ଗେ ସଙ୍ଗେ ଗୋଟିଏ କରୁଣ ଆର୍ତ୍ତନାଦ କରି ଲୋକଟି ଢଳି ପଡ଼ିଲା । ତାପରେ ସେ ବୁଲିପଡ଼ି ରହମନ୍ ପାଖକୁ ଗଲାବେଳକୁ, ବୁଝି ପାରିଲା ନାହିଁ । ପଛରୁ ତା ବେକକୁ କିଏ ମାଡ଼ିବସିଛି । ଯଦିଓ ଜୀବନର ଶକ୍ତି ବଳଥିଲା ତଥାପି ସେ ତାର ହାତ ସମ୍ଭାଳି ନ ପାରି ତଳେ ପଡ଼ିଗଲା । ତାକୁ ଜଣାଗଲା ତା ପିଠି ଉପରେ କିଏ ବସି, ହସୁଛି । ସେ ଧୀରେ ଧୀରେ ଗୋଡ଼ ଦୁଇଟାକୁ ଉପରକୁ ଉଠାଇଲା ଏବଂ ସଙ୍ଗେ ସଙ୍ଗେ ସେ ଲୋକର ବେକକୁ ଗୋଡ଼ ଦୁଇଟାରେ ଗୁଡ଼ାଇ ଧରି ପକାଇଲା । ଲୋକଟି ସଙ୍ଗେ ସଙ୍ଗେ ତଳେ ପଡ଼ିଗଲା ଏବଂ ଜୀବନ ତାକୁ ମାଡ଼ିବସି ତା ହାତରୁ ହଠାତ୍ ଛୁରିଟା କାଢ଼ିନେଲା । ଦେଖିଲା ଯେ ସେ ରହମନ୍ । ଜୀବନ କାଳ ବିଳମ୍ବ ନ କରି ବସାନ୍ତି ବାସ୍ତୁ ତା ନାକ ନିକଟରେ ଦେଖାଇଲା । ସେ ମଧ୍ୟ

ଗୋଟିଏ ବରୁଣ ରହିବାର କଥା ପଡ଼ିଗଲା । ଜୀବନ ସଙ୍ଗେ ସଙ୍ଗେ ଉଠି ତାର ଗୋଟାଏ ବଡ଼ ଟୁଙ୍କରେ ନସ ଦୁହିଁଙ୍କୁ ଦୁସ୍କଇ ଦେଲା । ନବଙ୍କୁ ଉଠାଇ ସବୁ କଥା କହିଗଲା । ନବ ତାର ପ୍ରଶଂସା ନ କରି ରହିପାରିଲା ନାହିଁ । ତା ପରେ ସକାଳକୁ ଗାଡ଼ି ହାବଡ଼ାରେ ପହଞ୍ଚିଲା । ଏମାନେ ତର ତର କରି ସେ ଗାଡ଼ିରୁ ଓହ୍ଲାଇ ଗୃହକୁ ଗଲେ । ବାହାରେ ଗୋଟିଏ ଟ୍ୟାକ୍ସି ଧରି ଗୃହକୁ ବହୁବଜାରର ଗୋଟାଏ ବଡ଼ ହୋଟେଲକୁ ।

ବଡ଼ ଧରଣର ହୋଟେଲ । ନାମଜାଦା ହୋଟେଲ । ବହୁତ ଲୋକଙ୍କ କାରବାର । ଗବ୍ୟମାନଙ୍କ ଦ୍ୱାରା ସକାଳୁ ମଧ୍ୟ ଭିଡ଼ । ଜୀବନ ଏବଂ ନବ ମଧ୍ୟ ଓହ୍ଲାଇଲେ ସେଇଠି । ଜୀବନ ମ୍ୟାନେଜରଙ୍କୁ ଡକାଇ ପଠାଇଲା । ମ୍ୟାନେଜର ବାହାରି ଆସିଲେ । ମ୍ୟାନେଜରଙ୍କୁ ଦେଖି ଜୀବନ ଆଶ୍ଚର୍ଯ୍ୟ ହୋଇଗଲା । ମ୍ୟାନେଜର ବୃଦ୍ଧ, ଗେଡ଼ା, କଣ ଦାନ୍ତ ସାରିଗଲାଣି । ମୁଣ୍ଡଟି ଟାଙ୍ଗରା । ସେଥିରେ ମଧ୍ୟ ଫେସନ୍ କମି ନାହିଁ । ପ୍ୟାଣ୍ଟ ଏବଂ ସାର୍ଟ ପିନ୍ଧିଛନ୍ତି । ଆସି ଜୀବନ ସମ୍ମୁଖରେ ଠିଆ ହୋଇଗଲେ । ସେ ମଧ୍ୟ ଜାଣିନଥିଲେ ଟେକାଣି ଏ ଦୁଇଜଣଙ୍କୁ ଦେଖି ଚମକି ଉଠିଲେ, ଯାହା ହେଉ ଖଣ୍ଡିଏ ରେଜିଷ୍ଟର ଟାଣି ଆଣି ପାଖରେ ବସିଲେ । ଜୀବନ ସ୍ୱର ବଦଳାଇ କହିଲା, "ଆମେ ଦୁହେଁ ବମ୍ବେରୁ ଆସିଛୁ । ଏଠାରେ କଲିକତା ବୁଲି ବୁଲି କରିବୁ ବୋଲି । ଆମର ପ୍ରାୟ ଏକମାସ ପାଇଁ ଗୋଟିଏ ଘର ଦରକାର । ଆପଣଙ୍କର ଏଠାରେ ଘର ଖାଲି ଅଛି ?"

ମ୍ୟାନେଜର ଟିକିଏ ଭାବି କହିଲେ, "ହଁ ଅଛି ।" କିନ୍ତୁ ମାସକୁ ଘରଭଡ଼ା ଟ ୫୦୯ ପଡ଼ିବ ।

"ସେଥିରେ କିଛି ଆପତ୍ତି ନାହିଁ ।" ଜୀବନ କହିଲା ।

"ଆପଣମାନେ ବମ୍ବେରେ କଣ କରନ୍ତି ?" ମ୍ୟାନେଜର ପଚାରିଲେ

ନବ କହିଲା, "ଆମେ ଦୁହେଁ ଦୁଇଭାଇ । ସେଠାର ଜଣେ ବଡ଼ ସେଠଙ୍କ ପୁଅ । ଚାକିରି କଥା ପାଇ ଜାଣୁଁ । ପାଠପଢ଼ା ସାରି ବୁଲୁଛୁ । ଯଦି ମୋଟା ବେତନରେ ଚାକିରି କେଉଁଠି ମିଳିବ ତେବେ କହିବୁ ।"

ମ୍ୟାନେଜର ଜଣ ଖୁବ ହଠାତ୍ ପଚାରିଲା, "ଅଚ୍ଛା, ଆପଣ-ମାନେ ଚାକିରି କରିବେ ?"

"ଯଦି ସେଥିପାଇଁ ମିଳିବ ତେବେ ନ କରିବୁ କାହିଁକି ?" ନବ କହିଲା ।

ତାପରେ ମ୍ୟାନେଜର ଚାରିଅଙ୍କୁ ଗୁଡ଼ିଏ କଲିଙ୍ଗ୍ ବେଲ୍‌ରେ ଚାକରକୁ ଡାକିଲେ ଏବଂ କହିଲେ, "ଏ ଦୁଇବାବୁଙ୍କୁ ଉପରେ ଉତ୍ତର ପାଖରେ ଯେଉଁ ଘରଟି ଅଛି ସେଇଠିକୁ ନେଇ ଯାଅ" । ଅନ୍ୟ ଫେରେସ୍ତା ଜୀବନକୁ କହିଲେ, "ଆପଣ ଏ ଟୋକା ସଙ୍ଗରେ ଯାଆନ୍ତୁ । ମୁଁ ଟିକିଏ ଚାମ ସାରି ଯାଉଛି ।"

ଜୀବନ ଏବଂ ନବ ଟୋକା ପଛେ ପଛେ ଚାଲିଲେ । ଉପରେ ପ୍ରାୟ ୧୦।୧୨ଟା ଘର ହେବ । ସବୁ ବେଶ୍ ଫେସନ୍‌ରେ ତିଆରି । ମଜା ମଜଲିସ କରିବାକୁ ସବୁ ସୁବିଧା । ଚାକର ଟୋକା ଜୀବନକୁ ଘରଟି ଦେଖାଇ ଦେଇ ଚାଲିଗଲା । ଜୀବନ ଏବଂ ନବ ଘର ଭିତରକୁ ପଶିଲେ । ଘରଟି ଖଟ, ଟେବୁଲ, ଚୌକିରେ ପୂର୍ଣ୍ଣ । ତାଛଡ଼ା ଆଲମାରି, ବିଜୁଳିବତୀ, ବିଜୁଳି ପଙ୍ଖା । ଅଧିକନ୍ତୁ ମଧ୍ୟ କେତେକ ସୁନ୍ଦର ସୁନ୍ଦର ଉପକରଣରେ ଘରଟି ପୂର୍ଣ୍ଣ । ଜୀବନ ଏବଂ ନବ ତାଙ୍କ ଜିନିଷପତ୍ର ସଜାଡ଼ି ରଖୁ ରଖୁ ନବ କହିଲା, "ଜୀବନ ବର୍ତ୍ତମାନ କଣ କରିବା ?"

ଜୀବନ କହିଲା; "ବ୍ୟସ୍ତ ନାହିଁକ! ଯାହା ହେବାର ହେବ, ଦେଖାଯିବ।"

"ତୁ କଣ ବୁଝିଲୁ କହିଲୁ ଜୀବନ।" ନବ ପଚାରିଲା।

ଜୀବନ କହିଲା "ମୋର ଅନୁମାନ, ଏ ମ୍ୟାନେଜର ଦସ୍ୟୁମାନଙ୍କ ମଧ୍ୟରୁ ଜଣେ।"

"ତୁ କପରି ଜାଣିଲୁ?" ନବ ପଚାରିଲା।

ଜୀବନ କହିଲା, "ତା ଚାଲିଚଳନରୁ।"

ଏହି ସମୟରେ ବାହାରେ କାହାର ପଦ ଶବ୍ଦ ଶୁଣାଗଲା। ଦୁଇବନ୍ଧୁ ହଠାତ୍ ଉଠି ଠିଆ ହେଲେ। ଧୀରେ ଧୀରେ ଖଣ୍ଡିଏ କାଗଜ ହାତରେ ଧରି ଭିତରକୁ ପଶିଲେ ମ୍ୟାନେଜର। ମ୍ୟାନେଜର ଭିତରକୁ ଆସି କବାଟ ଭିତରୁ ଦେବାକୁ ଇଙ୍ଗିତ କଲେ। ନବ କବାଟ ବନ୍ଦ କଲା। ତାପରେ ମ୍ୟାନେଜର ଚୌକି ଉପରେ ବସି ଜୀବନ ଆଡ଼କୁ କାଗଜ ଖଣ୍ଡିକ ବଢାଇ ଦେଲା। ଅମୃତବଜାର ପତ୍ରିକା। ବଡ ବଡ ଅକ୍ଷରରେ ଏବଂ ଇଂରାଜୀରେ ଲେଖାଅଛି, "ଡାକ ଟ୍ରେନ୍‌ରେ ଖୁନ୍।"

ଦୁଇଜଣ ମୁସଲମାନ ଡାକୁଙ୍କୁ କେହି ଜଣେ ଖୁନ୍ କରିଛନ୍ତି। ପ୍ରଥମେ ପୋଲିସ ତାଙ୍କୁ ଭଦ୍ରଲୋକ ବୋଲି ଭାବିଥିଲା, କିନ୍ତୁ ପରେ ତାଙ୍କ ପାଖରୁ ଖଣ୍ଡିଏ କାଗଜ ବାହାରିଲା। ସେଥିରେ ଯାହା ଲେଖାଥିଲା, ଜଣାଗଲା ଯେ ସେମାନେ ଦସ୍ୟୁ। କିଏ ଏପରି ସାହସିକ ବ୍ୟକ୍ତି ଯେ କି ଦୁଇଟା ଦସ୍ୟୁଙ୍କୁ ଖୁନ୍ କରି ଦେଇପାରେ। ଅଦ୍ଭୁତ ମଧ୍ୟ ବର୍ତ୍ତମାନ କଲିକତାରେ ଦସ୍ୟୁମାନେ ବଡ଼ ପ୍ରବଳ ହେଲେଣି। ବହୁତ ଲୋକ ଡକାୟିତ ହେଲଣି। ପୁଲିସ ପକ୍ଷ ବହୁ ଉଦ୍ୟମ କରିସୁଦ୍ଧା ପ୍ରକୃତ ଦସ୍ୟୁକୁ ଧରିପାରୁ ନାହାନ୍ତି। ଏଣୁ

ଏହା ମଧ୍ୟରେ ସେହି ଯୁବକଙ୍କୁ ତାଙ୍କର ଅସୀମ ସାହସିକତା ହେତୁ ତାଙ୍କୁ ଧନ୍ୟବାଦ ଦିଆଯାଉଛି ।

ଜୀବନ ଏବଂ ନବ ଲେଖାଟିକୁ ୨୮ ଥର ପଢି ମ୍ୟାନେଜରଙ୍କୁ ଫେରାଇ ଦେଲେ ।

ମ୍ୟାନେଜର କହିଲେ, "ପଢ଼ିଲ ।"

ଜୀବନ କହିଲା, "ହଁ ପଢ଼ିଲୁ । କିନ୍ତୁ ଆମର ସେଥିରେ ଯାଏ କଣ ଆସେ କଣ ।"

ମ୍ୟାନେଜର ଏକଥା ଶୁଣି ରାଗିଉଠିଲେ, କିନ୍ତୁ ରାଗିଲେ ତ ହେବ ନାହିଁ । ଦୁଇ ଦୁଇଟା ଶୀକାର ଖସି ପଳାଇବେ । ସେ ମନର ଭାବନା ଗୋପନ ରଖି କହିଲେ, "ଦେଖ ତୁମେମାନେ ଯୁବକ । ତୁମମାନଙ୍କ ଦେହରେ ଅସୀମ ବଳ । ତୁମେ ସବୁ କାମ ଅକ୍ଲେଶରେ କରିପାର । ମୁଁ ଯେଉଁ କାର୍ଯ୍ୟଟି ଦେବି ଯଦି ତାହା ଅସାଧ୍ୟ, ତେବେ ସୁଦ୍ଧା ଇଚ୍ଛା କଲେ ସବୁ ସହଜ ସାଧ୍ୟ ହୋଇ ପାରିବ ।"

ଜୀବନର ମନରୁ ସବୁ ସନ୍ଦେହ ଦୂର ହୋଇଗଲା । ସେ ଭାବିବାକୁ ଲାଗିଲା ଯେ, ସେ ଠିକ୍ ସ୍ଥାନରେ ଆସି ପହଞ୍ଚିଛି । ସେ ତାଙ୍କର ମନୋଭାବ ଲୁଚାଇ କହିଲା, "କଣ ଶୀଘ୍ର କହନ୍ତୁ । ଶୁଣିବାକୁ ଆମ ମନ ବଡ଼ ଅସ୍ଥିର ହେଉଛି ।"

ମ୍ୟାନେଜର ଆଉ ଟିକଏ ପାଖକୁ ଘୁଞ୍ଚି ଆସି କହିଲେ, "ଆପଣମାନେ ଉଡ଼ାଜ କରିପାରିବେ ? ପିସ୍ତଲ ମାରି ପାରିବେ ? ସବୁ ବିପଦକୁ ସ୍ମିତ ମଧ୍ୟରେ ଦେଖି ପାରିବେ ?"

ଏକଥା ଶୁଣି ନବ ଥକି ଯାଉଥିଲା, କିନ୍ତୁ ପରେ କଣ ଭାବିଲା କେଜାଣି କହିଲା, "ହଁ ପାରିବୁ ନାହିଁ କାହିଁକି ?"

"ଗାନା, ବାଜଣା ଜାଣ ତ ?" ମ୍ୟାନେଜର ପଚାରିଲେ ।

ନବ ଆଉ ପାରିଲା ନାହିଁ । ବିପଦ ବହୁଳ ଜୀବନ ଭିତରେ ରହିବଟା କାହିଁକି ? ଆଉ ପାରିଲା ନାହିଁ ରହସ୍ୟ କଣ ? କାହା ଭିତରେ ସେମାନେ ଗୋଡ଼ ଦେଇଛନ୍ତି । ସାଙ୍ଗ ଭାରତ ଯାହାର କବଳରେ ଥରହର, ସେମାନଙ୍କ ପାଖରେ ଗୁପ୍ତଚରି କରିବା ଅର୍ଥ, ଏବେ ମରି ବଞ୍ଚି ଉଠିବା ତାହା । ଯାହାହେଉ ରେଖାକୁ ତ ଯେ କୌଣସି ପ୍ରକାରେ ଉଦ୍ଧାର କରିବାକୁ ହେବ । ବଳ ଆସିଲା, ମନରେ ଦୃଢ଼ତା ଆସିଲା ।

ନବ କହିଲା, "ଭଲ ଭଲ ଭାଇ ।"

"ବେଶ, ବେଶ, ସେତିକି ଦରକାର", ମ୍ୟାନେଜର କହି ଉଠିଲେ ।

ତାପରେ ମ୍ୟାନେଜର ନିଜ ସ୍ଥାନରୁ ଉଠି ଠିଆ ହେଲେ ଏବଂ କହିଲେ, "ଅଚ୍ଛା, ଆଜି ରାତିରେ ମୁଁ ଛୁଟି ଆସେ ଏବଂ ଭାଲୁକ ତୁମକୁ ସେଠାକୁ ନେଇଯିବ ।" 'ଯାଉଛୁ' କହି ମ୍ୟାନେଜର ଚାଲିଗଲେ ।

—୪—

ତା ପରଦିନ ସନ୍ଧ୍ୟା । ମ୍ୟାନେଜର ଆସି କହିଗଲେ ଯେ, ରାତି ଦୁଇଟା ବେଳକୁ ଠିକ୍ ହୋଇଥିବେ । ଆସି ନେଇ ଯିବେ । ଏତକ କହିଦେଇ ମ୍ୟାନେଜର ଚାଲିଗଲେ ।

ତାପରେ ଭାବନା ପଡ଼ିଲା ଦୁଇ ବନ୍ଧୁଙ୍କର । କେଉଁଠିକି ଯିବେ, କରିବେ କଣ ? ଯମ ପୁରୀକୁ ନୁହେଁ ତ । ସେଠାକୁ ଗଲେ ଫେରି ଆସି ପାରିବେ ତ । ବିଶ୍ୱାସ ହେଉ ନାହିଁ । ତେବେ କଣ ମୃତ୍ୟୁ । ହିଁ, ହିଁ, ମୃତ୍ୟୁ ବରଂ ଭଲ, କିନ୍ତୁ ଦେଶକୁ ଏପରି ବିପଦରେ ପକାଇ ଯିବାଟା ଉଚିତ ନୁହେଁ ।

ଦୁଇବନ୍ଧୁ ସ୍ଥିର କଲେ ଯେତେ ବିପଦ ପଡ଼ୁ ପଛକେ ସହିବେ, କିନ୍ତୁ ନିଶ୍ଚୟ ଯିବାକୁ ହେବ ।

ଏହି ସମୟରେ ଖାନସାମା ଆସି ଖାଇବାକୁ ଦେଇଗଲା । ଦୁଇବନ୍ଧୁଙ୍କର ଖାଇବାକୁ ଆଦୌ ଇଚ୍ଛା ନ ଥିଲା, କିନ୍ତୁ ବାଧ୍ୟ ହୋଇ ଖାଇ ବସିଲେ । ଦ' ଦଶଟା ଖାଇ ଦେଇ ବିଛଣାରେ ପଡ଼ିଗଲେ ।

ପୁଣି ଭାବନା । ଦୁହିଁଙ୍କ ମନରେ ଏକପ୍ରକାର ଭାବନା ଖେଳୁଛି । ଏହାରି ମଧ୍ୟରେ ଯେ ଦୁଇଟା ବାଜିଲାଣି ତାହାର ଖିଆଲ ନାହିଁ । ମ୍ୟାନେଜର ଆସି ଡାକିବାରୁ ଭାବନା ଭାଙ୍ଗିଲା । ଦୁଇବନ୍ଧୁ ଉଠି ବସିଲେ । ମ୍ୟାନେଜରଙ୍କର ବେଶ ଦେଖି ସେମାନେ ଡରିଗଲେ । କଳା ପୋଷାକ, ହାତରେ ଛୁରୀ ଚକ୍ ଚକ୍ କରୁଛି । ଦୁଇ ପକେଟରେ ଦୁଇଟା ପିସ୍ତଲ ଗୁଳିରେ ଭରା ।

ମ୍ୟାନେଜର ଦୁଇଟା ପୋଷାକ ତାଙ୍କ ଆଡ଼କୁ ପକାଇ ଦେଇ କହିଲେ, "ଶୀଘ୍ର ପିନ୍ଧି ବାହାରି ଆସ । ଡେରି କର ନାହିଁ ।"

ଦୁଇବନ୍ଧୁ ପୋଷାକ ଦୁଇଟା ଉଠାଇ ନେଇ ଥରି ଥରି ପିନ୍ଧି-ବାକୁ ଲାଗିଲେ । ସେମାନଙ୍କ ଭୟ ଦେଖି ମ୍ୟାନେଜର ନ ହସି ରହି ପାରିଲେ ନାହିଁ । ଓଃ, କି ଭୀରୁ ତୁମେ । ସତେ କି ଯେପରି ଫାଶଟା ଲାଗିଯିବ ।

ମ୍ୟାନେଜର ହସି ହସି କହିଲେ, "ସେଠାକୁ ନ ଯାଉଣୁ ତ ଏତେ ଭୟ କରୁଛ । ଆଉ ସେଠାକୁ ଗଲେ ବୋଧେ ଏକାଥରକେ ଶେଷ ହୋଇଯିବ । ସେଠାରେ ଏତେ ଭୟଙ୍କର କାଣ୍ଡ ଅଛି, ଯାହା ଦେଖିଲେ ତୁମର ପିଳେହି ପାଣି ହୋଇଯିବ । ଦମ୍ଭ ଧରି ନ ଗଲେ ବଡ଼ ବିପଦ ।"

ଏକଥା ଶୁଣି ଭୁଇଁଆଙ୍କର ଅନ୍ତର ଭୟରେ ଥରି ଉଠିଲା । ମନେ ହେଲା, ସେ ପିଶାଚମାନେ ସଙ୍ଗେ ସଙ୍ଗେ ମାରିଦେବେ ବୋଲି । କିନ୍ତୁ ତା କଲେ ତ ତାଙ୍କର ମନୋବାଞ୍ଛା ପୂର୍ଣ୍ଣହେବ ନାହିଁ ? ଥିର ହେଲେ । କମ୍ପ ଧରି ମ୍ୟାନେଜରଙ୍କ ପଛରେ ଚାଲିଲେ ।

ଅନ୍ଧାର ରାତି । ନିସ୍ତବ୍ଧ ପୃଥିବୀ । କେବଳ କେତେକଙ୍କ ବୋଠା ଉପରୁ କଲ୍ୟାଣବତୀ ଝାପସା ଝାପସା ହୋଇ ତାହାରିକୁ ଦେଖାଯାଉଛି । ଏତେ ବଡ ସହରଟାରେ ଜନ ସମାଗମ ନାହିଁ । ସେ ନିସ୍ତବ୍ଧ ଭେଦ କରି ଚାଲିଛନ୍ତି ତିନି ପ୍ରାଣୀ ପଛକୁ ପଛ ।

ଜୀବନ ଏବଂ ଜଡ ଭାବୁଛନ୍ତି, "କୁଆଡେ ଯାଉଛନ୍ତି । କାହାର ଜାଗା ! କଣ ଯେ ସେଠାରେ ଭୀଷଣ କାଣ୍ଡ ଅଛି । ସେଠାକୁ ଗଲେ ଅଣି ପାରିବେ ତ ? ଯମାଳୟ ନୁହେଁ ତ ? କେଖା କଣ କରୁଥିବ । ଭଣ୍ଡାର ଉଦମାତ୍ର ତା ଉପରେ ଅଧୋଗୁର କରୁ ନ ଥିବ ତ ? ତାର ଅବସ୍ଥା ଯେ କଣ ହେବଣି ? କାନ୍ଦୁଥିବ କି ମରି ଗିବଣି ? ନ ଖାଇ ନ ପିଇ ଆମକୁ ଭାବି ଭାବି ଶୁଖି ଯିବଣି ବୋଧ-ହୁଏ । ଆମକୁ ଏ ଛଦ୍ମବେଶରେ ଦେଖି ଚିହ୍ନି ପାରିବ ତ ? କିପରି ବା ଚିହ୍ନାଦେବୁ ? କରିବୁ ବା କଣ ? ଶେଷକୁ "ଆମକୁ ମରିବାକୁ ହେବ । ହଉ, ଭଗବାନଙ୍କର ଇଚ୍ଛା ।"

ହଠାତ୍ ସେମାନଙ୍କର ଗତି ବନ୍ଦ ହୋଇଗଲା । ଦେଖିଲେ ମ୍ୟାନେଜରଙ୍କ ଗୋଟିଏ ଭଙ୍ଗା ଘର ପାଖରେ ଠିଆ ହୋଇ କବାଟ ବାଡେଇଉଛି । ଜଡ ଜାଣି ପାରିଲା ଯେ ସେମାନେ ଠିକ୍ ସ୍ଥାନରେ ଆସି ପହଞ୍ଚିଛନ୍ତି ।

ଅଳ୍ପ ଅଳ୍ପ ବେଳ । ନୋହିଲେ ଖୁବ୍ ବିପଦ । ହଠାତ୍ ଦ୍ୱାର ଖୋଲିବା ଶବ୍ଦ ଶୁଣାଗଲା । ଦୁଇବନ୍ଧୁ ଦେଖିଲେ ଜଣେ ବୁଢ଼ୀ ଆସି ମ୍ୟାନେଜରଙ୍କୁ ଡାକୁଛି । ମ୍ୟାନେଜର ଆମକୁ ଅନୁସରଣ କରିବାକୁ ଇଙ୍ଗିତ କରି ଭିତରକୁ ପଶିଲେ, ଆମେ ଦୁହେଁ ଭିତରକୁ ଗଲୁ । ଅନ୍ଧାର ବାଟ । ମ୍ୟାନେଜର ଟର୍ଚ୍ଚ ଜଳାଇଲେ ।

ଘଞ୍ଚ ଗଳି । ଜଣକ ଛଡ଼ା ଦୁଇଜଣ ଏକା ଥରେକେ ସେ ବାଟେ ପଶି ପାରିବେ ନାହିଁ । ଆଗରେ ମ୍ୟାନେଜର, ମଝିରେ ଦୁଇବନ୍ଧୁ, ପଛରେ ବୁଢ଼ୀ । ଏହିପରି କିଛି ବାଟ ଗଲାପରେ ଆଉ ଗୋଟିଏ ଗଳି ପଡ଼ିଲା । ଠିଆ ହୋଇ ଯାଇ ହେବନାହିଁ । ମୁଣ୍ଡ ନୁଆଁଇ ନୁଆଁଇ ଚାଲିଲେ । ପୁଣି କିଛି ବାଟରେ ଆଉ ଗୋଟାଏ ଗଳି । କାନ୍ଥପଟ୍ଟ ଯେପରି ପଥର କଟାହୋଇ ତିଆର ହୋଇଛି । କଲିକତା ସହରରେ ଏ କି ଜାଗା ! ଆମେ କଣ ଆଉ କେଉଁଠି ପଡ଼ିଥିଲୁ ।

ଯାହାହେଉ, ଏହି ସମୟରେ ମ୍ୟାନେଜର କହିଲେ, "ଗୁଣ୍ଡି ଗୁଣ୍ଡି ଆସ ।" ଧୈର୍ଯ୍ୟ ଧରି ସେମାନେ ଚାଲିଲେ । ଏହାପରେ ପ୍ରାୟ ଥୋଡ଼ାଏ ବାଟ ଯିବାପରେ ଗୋଟାଏ କ୍ଷୀଣ ଆଲୋକ ରେଖା ଦେଖି-ବାକୁ ପାଇଲେ । ସେଠାରୁ ଚାଲି ଚାଲି ଯିବାକୁ ସୁବିଧା ହେଲା । ତାପରେ ସେମାନେ ଆସି ପହଞ୍ଚିଲେ ଗୋଟିଏ କୋଠରୀ ଭିତରେ । ଦୁଇ ଚାରି ଜଣ ଲୋକ ସେମାନଙ୍କ ଅପେକ୍ଷାରେ ଥିଲେ । ମ୍ୟାନେ-ଜରଙ୍କୁ ଦେଖି ସେମାନେ ଉଠି ଠିଆ ହେଲେ ।

ମ୍ୟାନେଜର କହିଲେ, "ସବୁ ଠିକ ଅଛି ତ ?"

ଜଣେ କହିଲା, "ଆଜ୍ଞା ।"

ଏହାପରେ କେତୋଟା ଘର ଟପିଗଲେ । ସବୁ ପଥର କଟା ହୋଇ ତିଆର ହୋଇଛି । ଅଦ୍ଭୁତ ପ୍ରକାରର ଘର ଗୁଡ଼ିକ । ସବୁ

ଘରେ ଝଙ୍କଲରଖି । ଦୁଇବନ୍ଧୁ ଏତେ ସରେ ବେଶୀ ଲୋକଙ୍କୁ ନ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ବହୁତ ବାଟ ବୁଲି ବୁଲି ସେମାନେ ଆସି ଗୋଟିଏ ଖାଲି ଘରର ପହଞ୍ଚିଲେ ।

ମ୍ୟାନେଜର କହିଲା, "ତୁମେ ଏ ଘରେ ଥାଅ । ମୁଁ ଯାଉଛି, ଘଣ୍ଟାକପରେ ଆସିବି । ତୁମର ଖାଇବାପିଇ ସବୁ ପଠାଇ ଦେଉଛି ।" ଏହା କହି ମ୍ୟାନେଜର ଚାଲିଗଲା ।

ଦୁଇବନ୍ଧୁ ସେଠାରେ ପଡ଼ିଥିବା ଦୁଇଟି ଖଟ ଉପରେ ବସି ପଡ଼ିଲେ । ଘରଟି ଦୁଇଟି ଖଟ, ଦୁଇଟି ଟେବୁଲ ଏବଂ ଦୁଇଟି ଚୌକିରେ ପୂର୍ଣ୍ଣ । ଟେବୁଲ ଉପରେ ନାନାପ୍ରକାର ବହି ଥୁଆ-ହୋଇଛି । ଖଟ ଉପରେ ଭଲ ଗଦି ପଡ଼ିଛି ।

ଜୀବନ ଭୁବନ ଲୋକେ ବହୁ ମଉଜ ମଜଲିସରେ ଅଛନ୍ତି । ସେ ଉଠି କବାଟ ବାଟେ ବାହାରକୁ ଅନାଇଲା । ଅନ୍ଧାରରେ ବାହାରକୁ ଦେଖିବାକୁ ପାଇଲା ନାହିଁ । ଫେରି ଆସି ବସି ପଡ଼ିଲା ।

ଏହି ସମୟରେ ଗୋଟିଏ ଲୋକ ଆସି ଦୁହିଁଙ୍କୁ ଖାଇବାକୁ ଦେଇଗଲା । ସେ ଖାଦ୍ୟର ବାସନାରେ ଘରଟି ମହକି ଉଠିଲା । ସେ ଖାଦ୍ୟ ଦେଖି ଦୁଇବନ୍ଧୁ ଆଶ୍ଚର୍ଯ୍ୟ ହୋଇଗଲେ । ଏପରି ଖାଦ୍ୟ ସେମାନେ ଜୀବନରେ କେବେ ଦେଖି ନାହାନ୍ତି କି ଖାଇ ନାହାନ୍ତି । ଏ ସବୁ ଦେଖି ଖାଇବାକୁ ମନ ହେଲେ ସୁଦ୍ଧା ଅନ୍ତର ଭିତରଟା ଜଳ ସୋଷ ଯାଉଥାଏ । ସେମାନେ ଭାବୁଥାଆନ୍ତି ଯେପରି ଏହାର ଭିତରେ ଗୂଢ଼ ରହସ୍ୟ ଲୁକ୍କାୟିତ ରହିଛି । ଯାହାହେଉ କ୍ଷୁଧା ତ ହେଉଥିଲା । ବାଧ୍ୟହୋଇ ଖାଇଲେ । ସିଗାରେଟ୍ ଖଣ୍ଡିଏ ଖଣ୍ଡିଏ ଲଗାଇ ବିଛଣାରେ ପଡ଼ିଗଲେ ଏବଂ ଲୋକଟି ବାସନ ନେଇ ଚାଲିଗଲା । ଏହି ସମୟରେ ମ୍ୟାନେଜର ଆସି ପହଞ୍ଚିଲେ । ତାଙ୍କ ବନ୍ଧୁ ଯାହା ଶୋଇଥିଲେ ଉଠି ବସିଲେ ।

ମ୍ୟାନେଜର କହିଲେ, "ଶୁଣ ଶୁଣ ଉଠେଇ ଚାହିଁବ ?" ଏତିକି କହି ଖଣ୍ଡିଏ ଚୌକିଉପରେ ବସି ପଡ଼ିଲେ ।

ପୁନର୍ବାର ମ୍ୟାନେଜର ଆରମ୍ଭ କଲେ । "ଦେଖ ସୁରବାବୁ (ଜୀବନର ଛଦ୍ମନାମ) ଏ ଘର ତ ତୁମର । ଏଥିରୁ କୋଉଁ କୁଣି-ଅଙ୍କେ ଚଳିଲେ ହେବ ନାହିଁ । ସବୁ କାମ ନିଜ ନିଜ ହାତରେ କରିନେବ ବୁଝିଲ ? ମୁଁ ଜଣେ ଲୋକ ବନ୍ଦୋବସ୍ତ କରି ରଖିଛି । ସେ ସକାଳୁ ଆସି ତୁମକୁ ସବୁ ଦେଖାଇ ଦେବ । ସବୁ ସୁବିଧା କରିଦେବ । କିନ୍ତୁ ହୁସିଆର ହୋଇ ଚଳିବ । କୌଣସି ଥିବ ଭୟ କରିବ ନାହିଁ । ମୁଁ ଆଜି ଯାଉଛି । ପୁଣି ଏତିକି ବେଳକୁ କାଲି ଆସିବି । କହି ମ୍ୟାନେଜର ଚାଲିଗଲେ । କୁଆଡ଼େ ଗଲେ ଏବଂ କାହିଁକି ଗଲେ ସୁର ବୁଝି ପାରିଲା ନାହିଁ ।

(ବର୍ତ୍ତମାନଠାରୁ ଜୀବନ ଏବଂ ନବଙ୍କୁ ତାଙ୍କର ନୂଆ ନାମ ଧରି ଡାକିବା । ଜୀବନର ନାମ ସୁର ଏବଂ ନବର ନାମ ନର ।)

ସୁର କବାଟ ବନ୍ଦ କରିଦେଇ ଆସି ବିଛଣାରେ ପଶିଗଲା ।

ନର କହିଲା, "ଏଥର ଶୋଇବା । ଖୁବ୍ ନିଦ ମାଡ଼ିଲାଣି ?

ସୁର କହିଲା "ହେଉ" ।

କିନ୍ତୁ ତାହାର ଆଖିରେ ନିଦ ନାହିଁ । ସୁର ଭାବୁଛି, "ତାଙ୍କର ପରି କେତେ ସୁରଙ୍କ ଜୀବନ ଏହାରି ମଧ୍ୟରେ ନଷ୍ଟ ହୋଇ ଯାଉଛି ।" ସୁର ଭାବି ପାରିଲା ନାହିଁ । ମ୍ୟାନେଜର ବୋଧହୁଏ ଜମିଦାରଙ୍କ ଦକ୍ଷିଣ ହସ୍ତ । ସେ ବାହାର ଖବର ଭିତରେ ଏବଂ ଭିତର ଖବର ବାହାରେ ଦେଉଛନ୍ତି । ତାହାକୁ ଲୋକ ଆଖି ଭିତରେ ଯୋଗାଉଛନ୍ତି । ପୁଣି ସୁର ଭାବି ଚାଲିଲା "ମ୍ୟାନେଜର କହୁଥିଲେ ଯେ ଏହା ଭିତରେ ବହୁତ ଗୋପନ ପଦାର୍ଥମାନ ଅଛି । ଯାହାକୁ

ଦେଖିଲେ ମନୁଷ୍ୟର ଭୟ ହେବାର ସମ୍ଭାବନା ।" ଯଦିଓ ଭୟ ଲାଗେ, ତଥାପି ସୁଦ୍ଧା ସେ ଜନଶୂନ୍ୟ ଗୁମ୍ଫାକୁ ଦେଖିବା ନିମିତ୍ତ ତାର ହୃଦୟ ବ୍ୟାକୁଳ ହୋଇ ଉଠିଲା । ସେ କଥା ସବୁ ଭାବି ଭାବି ତାହାର ଆଖିରେ ନିଦ ଆସିଲା ନାହିଁ ।

ସାହାନ୍ତ୍ରିଆ ପହରକୁ ଟିକିଏ ଥଣ୍ଡା ଲାଗିବାରୁ ଦୁହିଁଙ୍କୁ ଟିକିଏ ନିଦ ଲାଗିଗଲା ।

ନନ୍ଦର ଯେତେବେଳେ ନିଦ ଭାଙ୍ଗେ ସେତେବେଳକୁ ସେ ଘଡ଼ିକୁ ଅନାଇ ଦେଖିଲା, ନଅଟା ବାଜିଲାଣି । ସୁରୁ ଉଠିନାହିଁ । ସେ ଚାରି ପୁରକୁ ଚାହିଁଲା । ଗୃହଅତି ଅନ୍ଧାର ! ବାହାରର ସୂର୍ଯ୍ୟାଲୋକ ମଧ୍ୟ ତା ଭିତରକୁ ପଶି ପାରୁ ନାହିଁ । ଏ କିପରି ସ୍ଥାନ ! ଏ କେଉଁଠି କିଅଣ ! ତା ମନରେ ପ୍ରଶ୍ନ ଉପରେ ପ୍ରଶ୍ନ ଉଠିଲା । ତାପରେ ଦୁଇ ବନ୍ଧୁ ଉଠି କବାଟ ଖୋଲିଲେ । ଦ୍ୱାର ନିକଟରେ ଜଣେ ବଳିଷ୍ଠକାୟ ବ୍ୟକ୍ତି କଳାପୋଷାକ ପିନ୍ଧି ତାଙ୍କର ଅପେକ୍ଷାରେ ଠିଆ ହୋଇଛି । ସେ ଦୁଇବନ୍ଧୁଙ୍କୁ ଦେଖି କହିଲା, "ଆସନ୍ତୁ, ବାଥ୍‌ରୁମ୍‌କୁ ନେଇଯାଏ । ସେଠାରେ ଆପଣଙ୍କ ପାଇଁ ସବୁ ସୁବିଧା କରାଯାଇଛି ।" କବାଟକି ବନ୍ଦକରି ଦୁଇବନ୍ଧୁ ଲୋକଟିର ପଛେ ପଛେ ଚାଲିବାକୁ ଲାଗିଲେ ।

— ୬ —

ବହୁତ ବାଟ ବୁଲି ବୁଲି ଶେଷରେ ବାଥ୍‌ରୁମରେ ଆସି ପହଞ୍ଚିଲେ । ଯେଉଁବାଟ ଦେଇ ଏମାନେ ଗଲେ, ସେ ବାଟରେ କୌଣସି ଗୋଟିଏ ଲୋକକୁ ନ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସୁରୁ କହିଲା, "କଣ, ଏତେବଡ଼ ଜାଗାଟାରେ ଲୋକ ନ ଥାନ୍ତି ? ତାଙ୍କର ସଂଖ୍ୟା କଣ କମ୍ ?" ଏସବୁ ଦେଖି ଦେଖି ଦୁଇବନ୍ଧୁ ଆଶ୍ଚର୍ଯ୍ୟ

ହୋଇଗଲେ । ସତେକି ଯେପରି ସେମାନେ ଅପି ଗୋଟିଏ ଅଣ୍ଡର୍ଗ୍ରୀ ଦ୍ବୀପରେ ପହଞ୍ଚିଛନ୍ତି ।

କିଛି ସମୟ ପରେ ସୁର ପଚାରିଲେ, "ଆପଣଙ୍କ ନାମ" ।

ଅପର ବ୍ୟକ୍ତି କହିଲେ, "ମୋ ନାମ ରବି ।"

ସୁର ପୁନର୍ବାର ପଚାରିଲେ, "ଏଠାରେ ଜାଣିକି ରହୁଛ, ତୁମକୁ କିଏ ଆଣିଲା, କିପରି ବା ଆଣିଲା କହିପାରିବ ?

ରବି ସୁରଙ୍କୁ ଛୁଇଁ ସୁରର ପାଟିରେ ହାତ ଦେଇ ଚୁପ୍ ଚୁପ୍ ହୋଇ କହିଲା, "ଶାନ୍ତି ଭଳ ନାହିଁ । କେହି ଯେବେ ଶୁଣେ ତେବେ ମୋର ଆଜି ଏ ସଂସାରରେ ରହିବା କଷ୍ଟ ହୋଇଯିବ । ତୁମର ମଧ୍ୟ । ଅମର ଏଠାରେ ସେସବୁ କହିବାକୁ ମନା ।

ସୁର କହିଲା, "କେବଳ ଜାଣିବାକୁ ଟିକିଏ ପଚାରିଲିନା !"

ରବି କହିଲା, "ଏଠାରେ ଯେ ଏସବୁ କଥା କାହାକୁ ପଚାରେ ତାର ଦଣ୍ଡ କଣ ଜାଣନ୍ତି ? ଶୂଳି ।"

ସୁର ଓ ନର ଦୁହେଁ ଚମକି ଉଠିଲେ ।

ରବି କହିଲା, "ତୁମେ ତୁମର କାମସାରି ଆସ । ତୁମ କୋଠରିରେ ସବୁ କହିବି ।"

ରବି ବାହାରେ ରହିଲା । ଦୁଇବନ୍ଧୁ ଘରଭିତରକୁ ପଶିଲେ । ପାଇଖାନା ମଧ୍ୟ ବେଶ୍ ସୁନ୍ଦର ଭାବରେ ତିଆରି ହୋଇଛି । ଗୋଟାଏ ସ୍ଥାନରେ ପଥର କଟା ହୋଇଛି । ସେଇବାଟେ ପାଣିଆସି କୁଣ୍ଡରେ ପଡୁଛି ଏବଂ କୁଣ୍ଡତଳେ ଗୋଟିଏ ବଡ଼ କଣା, ସେଇଟି ଗୋଟାଏ ଟିପି ଦ୍ୱାରା ବନ୍ଦ ହୋଇଛି । ଠିପିଟି ଖୋଲିଦେଲେ ପାଣି ସେଇବାଟେ ଚାଲିଯାଉଛି । କୁଆଡ଼େ ଯାଉଛି ତା କେହି ଜାଣନ୍ତି ନାହିଁ । ଭିତରେ ବିଜୁଳିବତୀ । ବ୍ରସ୍ ଏବଂ ପାଉଡ଼ର ଥୁଆ-

ହୋଇଛି । ସାବୁନ୍, ଟଏଲେଟ ସବୁ ସଜଡ଼ା ହୋଇ ଥୁଆହୋଇଛି । ବାସନାତେଲ, ଅତୁର ଅତୁର କେତେକଥା ।

ଭୁବନ ଗାଧୋଉଛନ୍ତି, ତାଙ୍କ ସେପାଖରେ କେତେଗୁଡ଼ିଏ ସ୍ତ୍ରୀ ଲୋକଙ୍କ ପାଟି ଶୁଣାଗଲା । ଏ କଣ ! ଏଠାକୁ ସ୍ତ୍ରୀଲୋକ ଏତେ । ତାହିଁ ଅଦ୍ୟମ ତାହାରିକୁ ତ ଏ ଦଡେ ଦେଖି ନାହିଁ । ତେବେ କଣ ସେପାଖରେ ସେମାନେ ଅଛନ୍ତି ! ସ୍ତ୍ରୀ ଲୋକଙ୍କପାଇଁ କଣ ଅଲଗା ଘର ଅଛି ? ଏମାନେ ଏଠାରେ କଣ କରନ୍ତି । ଏମାନଙ୍କୁ କଣ ଜମିଦାର ଜବରଦସ୍ତି ଧରିଆଣିଛି ? କିନ୍ତୁ ସେପରି ତ ଜଣାପାଉ-ନାହିଁ । ଜଣାପାଉଛି ଯେପରି ଏମାନେ ସ୍ୱଇଚ୍ଛାରେ ଏଠାକୁ ଆସିଛନ୍ତି । ହସ ତ କଣ ଉଚ୍ଛୁଳି ପଡ଼ୁଛି ?

ହଠାତ୍ ଜଣକର ପାଟି ଶୁଭିଲା, "ବୁଝିଲୁ ମାଧବୀ, ଆମେ ଏଠାରେ କେତେ ସୁଖରେ ଅଛୁ । ପ୍ରକୃତରେ ଜମିଦାର ବଡ଼ ଭଲ ମଣିଷ । ମୁଁ କଣ ଏସବୁ ଜାଣିଥିଲି । ଏସବୁ ଜାଣିଥିଲେ କେବେଠାରୁ ଆସି ସାରନ୍ତିଣି । କଲିକତାରେ ବିଜ୍ଞାନ ପଢ଼ିସାରି ଘରକୁ ଆସି ଦେଖେ ତ ବାପ, ମା ସମସ୍ତେ ମୃତ । ମୁଁ ନିସ୍ସହାୟା ଥିଲି । ହଠାତ୍ ଜମିଦାରଙ୍କ ସହିତ ମୋର ଦେଖା ହେଲା । ସେ ମୋତେ ଆପଣାର କରିନେଇ ଏଠାରେ ଆଣି ରଖିଛନ୍ତି । ମୁଁ ବିଜ୍ଞାନ ଜାଣେ ବୋଲି ବିଜ୍ଞାନଘରର ମାଲିକ । ଏତେ ପୁରୁଷଗୁଡ଼ାକ ଅଛନ୍ତି କେହି ସାହସ କରି କିଛି ପଦାର୍ଥ ତିଆରି କରୁଛନ୍ତି । ମୁଁ ବୋଲି ସିନା ଏତେ ଜିନିଷ ତିଆରି କରିସାରିଲିଣି । ଜମିଦାରଙ୍କର ମୋ ଉପରେ ଖୁବ୍ ଦୟା ।"

ମାଧବୀ କହିଲା," ଅଚ୍ଛା, ସୁମିତ୍ରାଦେବୀ ତୁମେ ଯେଉଁ ଔଷ-ଧଟା ତିଆରି କରିଥିଲ, ମତେ ସେଇଟା ଶିଖାଇଦେବ ?

ସୁମନ୍ତ କହିଲା, "ଯେଉଁ ଔଷଧଟା ଲଗାଇଲେ କଟା ଘା ସଙ୍ଗେ ସଙ୍ଗେ ଭଲ ହୋଇଯାଏ ନା, ତାହା ଶିଖାଇ ଦେବ ।

ଆଉ ଜଣେ କହିଲା, "ସୁମନ୍ତ ଦେଖ୍ମା ମନେ ସେ ବିଷାକ୍ତ ବାଷ୍ପଟା ଟିକିଏ ଶିଖାଇ ଦେବ ତ ? ଯାହାକୁ ଶୁଙ୍ଘିଲେ ମନୁଷ୍ୟ ଏକ ଘଣ୍ଟାଏ ଧରି ବେହୋସ ହୋଇଯିବ ।"

ସୁମନ୍ତ କହିଲା, "ହଉ ହୁଣ୍ଡି । ତୋର ସେଇଟା ବଡ଼ ଦରକାର ? ହଉ ଶୀଘ୍ର ଚାଲ । ଲାବ୍ରେଟରୀ ଖୋଲିବା ବେଳ ଗଡ଼ି ଯାଉଛି ।"

ଅନ୍ୟ ଅନ୍ୟ ସ୍ତ୍ରୀ ଲୋକମାନେ ଚାଲିଗଲେ । ଦୁଇବନ୍ଧୁଙ୍କର ଆଉ ଦେଖିବାକୁ ବାକି ନ ଥିଲା । ସୁର କହିଲା, "ନର, ଆମ ଗାଁ ଜମିଦାର ପୁଣି ଏତେ ବୁଦ୍ଧିଆ ? ବିଜ୍ଞାନ କାରବାର ଏଠାରେ ପୁଣି ଚଲାଇଛନ୍ତି । ତେବେ ତ ତାଙ୍କୁ ପାଇବା ମୁସ୍କିଲ ।

ନର କହିଲା, "ଏସବୁ କଣ ଜମିଦାର କରୁଛନ୍ତି, ତା ନୁହେଁ । ସେହି ହୋଟେଲ ମ୍ୟାନେଜରର ଏ ସବୁ କାମ । ଦେଖାଯାଉ । ଚାଲିଯିବା ।"

ଦୁଇବନ୍ଧୁ ବାହାର ଆସିଲେ । ରବି ସଙ୍ଗେ ପୁଣି ନିଜ କୋଠରୀକୁ ଫେରି ଆସିଲେ ।

ରବି ଛିଡ଼ାହୋଇ କହିଲା, "ତୁମେମାନେ ଜଳଖିଆ କରନିଅ, ମୁଁ ଆସେ, ସବୁ କହିବି ।"

ରବି ଚାଲିଗଲା । ନର ଏବଂ ସୁର ପୋଷାକ ବଦଳାଇଲେ । ଜଳଖିଆ କରିସାରି ଖଟ ଉପରେ ବସିପଡ଼ିଲେ ।

କିଛି ସମୟପରେ ରବି ଆସି ସେ ଘରେ ପହଞ୍ଚିଲା । ରବି ଆସି [illegible] କବାଟ ଭିତରୁ ବନ୍ଦକଲା ଏବଂ କଥା ଆରମ୍ଭ କଲା । ଦୁଇବନ୍ଧୁ ନିଶ୍ଚିନ୍ତ ମନରେ ଶୁଣିବାକୁ ଲାଗିଲେ ।

ରବି କହିବାକୁ ଲାଗିଲା, ତାର ବାପା ଖୁବ୍ ବଡ ଲୋକ । ଲକ୍ଷ ଲକ୍ଷ ଟଙ୍କାର କାରବାର । ଦାସ ଦାସୀରେ ଭର୍ତ୍ତି । ତାର ବାପ, ମା ତଥା ଅଣା ନାମରେ ଏକମାତ୍ର ଭଉଣୀ । ବାପ, ମା ଗେଲବସର ଦୁଇ ଭାଇଙ୍କୁ ପାଠ ପଢାଇଲେ । ରବି ଫାଷ୍ଟକ୍ଲାସ ଏମ୍, ଏ ପାସ ଏବଂ ତାର ଅଣା ଅକ୍ଷରର ଭଉଣୀ ଅଣା ପାଶ୍‌କଲା ବି,ଏସ୍, ସି । ସେହି ବର୍ଷ ହଠାତ୍ ବାପା ମରିଗଲେ ହଇଜାରେ । କେବଳ ଘରେ ରହିଲେ ଏକା ମା । ଏହିପରି ସୁଖରେ ଦୁଃଖରେ କିଛି ଦିନ କଟିଗଲା । ଦିନେ ଅଣା କଲେଜରୁ ଆସି ମତେ କହିଲା, "ଭାଇ, ଆଜି ମୁଁ କଲେଜ ଗଲାବେଳେ ଏବଂ ଆସିଲାବେଳେ ଦେଖିଲି ମୋ ପଛରେ ଗୋଟାଏ ବ୍ୟକ୍ତି ସବୁବେଳେ ଗୁଲୁଥିଲା । କିଛି ବିପଦ ଅଛି ବୋଧହୁଏ ।"

"କେଉଁ କିଛି ଜାଣିପାରିଲା ନାହିଁ ବିପଦ କଣ । ମୁଁ ଭଲରୂପେ ଜାଣି ପାରିଥିଲି, କଥା ନିଶ୍ଚୟ ଗୁରୁତର । ତଥାପି ତାକୁ ଅଦୌ ଜଣାଇ ଦେଲି ନାହିଁ ।"

ସେହିଦିନଠାରୁ ତାର ପଢାପଢି ବନ୍ଦ । ସବୁବେଳେ ତାକୁ ମୁଁ ଦୃଷ୍ଟି ଉପରେ ରଖିଥାଏ । ସେ ଯେଉଁଆଡେ ଯାଏ, ମୁଁ ତା ସଙ୍ଗରେ ଯାଏ । ଘରେ ମାଆଙ୍କୁ ଛାଡିଲି, ପୁଲିସଙ୍କ ଜିମା ଦେଇ, ମୁଁ ଅଣା ସଙ୍ଗରେ ଥିବାରୁ ବୋଧହୁଏ କେହି ତାକୁ ଛିଣ୍ଡାଇଲେ ନାହିଁ । ଏହିପରି କିଛିଦିନ ଗୁଲିଗଲା ।

କିଛି ସମୟ ରବି କଥା କହି ରହିଲା । ମୁଁ ପଚାରିଲି, "ତା ପରେ କଣ ହେଲା କହନ୍ତୁ ।" ରବି କହିଲା, ମତେ ପୁଲିସଙ୍କ ବ୍ୟବହାର ବଡ ଖରାପ ଲାଗିଲା । କେବୁ ସ ।

(ଗୋଟିଏ ଭଲ ଜିନିଷ ଚୋରି ଗଲା । କଥାଟିଏ କହୁଥିଲେ ଶୁଣିଥିଲେ ନାହିଁ । ସେଥିପ୍ରତି ମୁଁ କିଛି ନଜର ଦେଇ ନ ଥିଲି ।”

ପ୍ରୀତି ରବି କଥା ବନ୍ଦ କଲା ।

ନର କହିଲା, “ହିଁ କହନ୍ତିଲେ ଜାଣିବା, ରୂପଶୀଘ୍ର ।”

ରବି ଆରମ୍ଭ କଲା, “ଅମାବାସ୍ୟା ରାତି, ସନ୍ଧ୍ୟା । ସନ୍ଧ୍ୟା ପୂର୍ବରୁ ଅବିରାମ ବର୍ଷା ହେଉଥିଲା । ସେଦିନ ଗୋଟିଏ ଭଲ ଫିଲ୍ମ ଥିଲା ମାରଦ ଥିଏଟର୍‌ରେ ।

ଅଖା କହିଲା, “ଭାଇ ଚାଲ ଦେଖିଯିବା ।” ମାଆଙ୍କ ଅବସ୍ଥା ଭଲ ନ ଥିଲା । ଏଣୁ ତାଙ୍କୁ ଛାଡ଼ିଦେଇ ଭାଇ ଭଉଣୀ ଥିଏଟର୍ ଦେଖିବାକୁ ଗଲୁ । ଅସ୍ଥି ଅସ୍ଥି ରାତି ପଥ । ନାଳ ଗର୍ଜୁଛି । ବର୍ଷା ସମ୍ପୂର୍ଣ୍ଣରୂପେ ଛାଡ଼ି ନାହିଁ । ଝିପି ଝିପି କରୁଛି । ରାସ୍ତାରେ ଜନସମାଗମ ନାହିଁ । ଟ୍ୟାକ୍ସି ଭଡ଼ା ଚୁକାଇ ଦେଇ ଘରକୁ ପଶିଲୁ । କିନ୍ତୁ ଦୁଆରରେ ଆସି ପହଞ୍ଚିବା ବେଳକୁ କପାଟ ମାଡ଼ ମାଡ଼ ପଡ଼ୁଥାଏ । ଦେଖିଲି ଦାଣ୍ଡଘର ମେଲା, ଘରର ଭିତରଆଡ଼ ଅନ୍ଧକାର । ମତେ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ଭୟ ହେଲା ମଧ୍ୟ । ଅଖା ଭୟରେ ମତେ ଜାକି ଧରିଲା । ମୁଁ ତାକୁ ଆଶ୍ୱାସନା ଦେଇ ଭିତରକୁ ପଶିଲି । ମା, ମା ବୋଲି ବହୁତ ଡାକିଲି । କିନ୍ତୁ କିଛି ଉତ୍ତର ପାଇଲି ନାହିଁ ।”

ରବିର ଆଖିରେ ଲୁହ ଦେଖାଗଲା । ସୁର ଓ ନର ଭାବ ପକାଇ କହିଲେ, “ହିଁ ରବିବାବୁ ତାପରେ କଣ ହେଲା ।”

ରବି ରୁମାଲରେ ଆଖିପୋଛି କହିଲା, “ଗୃହରବାହାର କୁଆଡ଼େ ଗଲେ । ସନ୍ଦେହ ହେଲା । ଅନ୍ଧାର ଭିତରକୁ ପଶିଲି । ଚାରିଆଡ଼ ଖୋଜିଲି । କୌଣସିଠାରେ କାହାରିକୁ ପାଇଲି ନାହିଁ ।

ଶେଷକୁ ଉପରକୁ ଉଠିଲି । ଉପର ଶୋଇବା ଘର । ସେଇଁ ଘରେ ମା ଶୁଏ, ସେ ଘର ଦରାଣ୍ଡ ମଧ୍ୟ ମେଲା । ଯାହା ଦେଖିଲି ମୋର ହୃଦୟ ଚମକି ଉଠିଲା । ମାଆର ଛାତିରେ ଛୁରୀ, ପଲଙ୍କ ସାରା ରକ୍ତ । କେବଳ ରକ୍ତ । ଆଃ, ଦୁର୍ବଳ ସେ । ଏ ରକ୍ତ ଦେଖି ଢଳି ପଡ଼ିଲି ମୋ ଉପରକୁ । ତାକୁ ଟେକି ନେଇ ମୋ ଗୋଡ଼ ଉପରେ ଶୁଆଇଦେଇ ପାଣି ଆଣିବାକୁ ଗଲି । ପାଣି ଆଣି ଦେଖେ ତ, ମୋ ପ୍ରାଣର ଭଉଣୀ ଆଉ ନାହିଁ । ସବୁ ଗଲା । ହଠାତ୍ କ'ଣ ହୋଇ ଉଠିଲି । ଠିଆ ହୋଇ ଏ ଘର ଦୁଆର ମୁହଁରେ ପହଞ୍ଚିଛି, ପଛ ଆଡ଼ୁ କିଏ ପାହାର ମୋ ମୁଣ୍ଡରେ ପଟାଙ୍ଗ୍ ପଟାଙ୍ଗ୍ । ପଡ଼ିଗଲି ଭୂମି ଉପରେ । ବେହୋସ ।"

ରଥ ଆଖିରୁ ଦୁଇ ବୁନ୍ଦା ଲୁହ ଟୋପା ପଡ଼ିଲା ।

ସୁଲ ଓ ନର ମଧ୍ୟ କାନ୍ଦ ପକାଇଲେ । ତା ପରେ ଯାହା ହେଲା ବୋଧ ଶୋଧ ହେବାପରେ ରଥ ପୁଣି ଆରମ୍ଭ କଲା ।

ଯେତେବେଳେ ଚେତା ପାଏ, ଦେଖିଲି ଗୋଟିଏ ସନ୍ଧ ଘରେ ମୁଁ ଶୋଇଛି ଧଳା ପୋଷାକ ପିନ୍ଧି । ମୁଁ ପାଖରେ ବେଶ୍ କେତେ କଳା ଧଳା ପୋଷାକ ପିନ୍ଧି ଭୟଙ୍କର ଲୋକଗୁଡ଼ାଏ । ମୋର ହୋସ୍ ହେବାର ଦେଖି ଜଣେ ଡାକ୍ତର ହସ ହସି କହିଲା, 'କ ରଥ ବାବୁ ବର୍ତ୍ତମାନ କପରି ବୋଧ କରୁଛନ୍ତି । ଚିନ୍ତା କରନ୍ତୁ । ଏଠାରେ କିଛି ମାତ୍ର ଅସୁବିଧା ହେବ ନାହିଁ । ତା କଥା ଶୁଣି ମୋର ଏପରି ସନ୍ଦେହ ଆସୁଥିଲା, ହୁଏତରେ ଯଦି ପିସ୍ତଲ ଥାଆନ୍ତା ତେବେ ସେ ବଦମାସ ଠାର ଜୀବନ ନ ନେଇ ଛାଡ଼ି ନ ଥାନ୍ତି । କିନ୍ତୁ ନାଚାର । ଭଉଣୀ ମୋର ଅଜୀବନ ବନ୍ଦୀ । ଯେତେ ଅଶ୍ଳୀଳ ହେଲାଇ ମୁଣ୍ଡ ତାଙ୍କୁ ସେ ବଦମାସଟା ବନ୍ଧକ ସାରି ନାହିଁ ।

ମୋର ଏଠାରେ ରହିବାର ଇଚ୍ଛା ନାହିଁ । କେବଳ ଖୋଜୁଛି ସୁଯୋଗ, ସୁବିଧା । ପାଇଲେ ପ୍ରତିଶୋଧ ନେଇ ଭଉଣୀ ସହ ଚାଲିଯିବି । ହଁ, ଅଭୁର ମଧ୍ୟ ଭଉଣୀ ସଙ୍ଗରେ ।

ଆଉ ଦୁଇଜଣ ନବ ବାଳିକା ଅଛନ୍ତି । ଜଣକ ନାମ ରେଖା ଏବଂ ଅଉ ଜଣଙ୍କ ନାମ ଲତା, ଏଠାର ବିଖ୍ୟାତ ସି.ଆଇ.ଡ଼ି ଅଶୋକ ବାବୁଙ୍କ କନ୍ୟା । କିପରି ସେ ବଦମାସ୍ ସେମାନଙ୍କୁ ଆଣିଲା, ସେହି ବିଷୟ ଭାବି ଭାବି ମତେ ଆଶ୍ଚର୍ଯ୍ୟ ଲାଗୁଛି । ଏ ଦୁଇ ଜଣ ତା ପାଖରେ ରାଜି ନୁହନ୍ତି ବୋଲି ସେ ସେମାନଙ୍କୁ ବଡ କଷ୍ଟ ଦେଉଛି । ବନ୍ଦୀକରି ରଖିଛି । ହଠାତ୍ ସ୍ୱର ତାନ୍ଦ ପକାଇ ରବିଙ୍କୁ କୁଣ୍ଢାଇ ପକାଇ କହିଲା, "ମୁଁ ହିଁ ସେ ହତଭାଗୀର ଭାଇ । ମୋର ପ୍ରକୃତ ନାମ ଜୀବନ । କିନ୍ତୁ ଅମେ ନାମ ଲୁଚାଇ ଅଜି ତାଙ୍କୁ ରକ୍ଷା କରିବାକୁ ଏଠାକୁ ଆସିଛୁ । ଏ ଲୋକ ମୋର ବାଲ୍ୟ ବନ୍ଧୁ ନବକୁମାର । ସେ ମଧ୍ୟ ମୋର ସହଯାତ୍ରୀ, ଛଦ୍ମବେଶରେ । କଣ କରିବୁ କହ, ରବିବାବୁ, କିପରି ନେବିର ଭଉଣୀମାନଙ୍କୁ ଉଦ୍ଧାର କରିବୁ ।"

ରବି ଧୈର୍ଯ୍ୟ ଧରି କହିଲେ, "ବ୍ୟସ୍ତ ହୁଅନ୍ତୁ ନାହିଁ । ଧୈର୍ଯ୍ୟ ଧରନ୍ତୁ । ମୁଁ ଥିବା ପର୍ଯ୍ୟନ୍ତ ତୁମର କିଛି ଅନିଷ୍ଟ ହେବ ନାହିଁ । ମୁଁ ସବୁ ବିଷୟରେ ସାହାଯ୍ୟ କରିବି । କେବଳ ସୁଯୋଗ । ବୁଝିଲ ସୁଦାବୁ, ବୁଝିଲ ନବ ବାବୁ କେବଳ ସୁଯୋଗ । ଏ ବଦମାସ୍କୁ ଉପଯୁକ୍ତ ଶିକ୍ଷା ଦେଇ ବିଜୟୋଲ୍ଲାସରେ ଭଉଣୀମାନଙ୍କୁ ନେଇ ଚାଲିଯିବା ନିଜ ନିଜ ଘରକୁ ।"

ତାପରେ କିଛିକ୍ଷଣ ସମସ୍ତେ ଚୁପ୍ ହୋଇ ବସି ରହିଲେ ।

ଶେଷକୁ ରବି କହିଲା, "ବର୍ତ୍ତମାନ ଆମେ ତାର ଅଧୀନ । ମତେ ତୁମମାନଙ୍କୁ ସବୁଆଡ଼ ବୁଲାଇ ଦେଖାଇ ସାରି, ସେ ଜମିଦାର ପାଖକୁ ନେଇ ଯିବାକୁ ହେବ । ତୁମେ ସବୁ ପଦାର୍ଥ ଭଲ ଭାବରେ ଦେଖିବ । ତୁମେ ଯାହା ସବୁ ଦେଖିଲ, ସେ ବିଷୟରେ ସେ ପ୍ରଶ୍ନ ପଚାରିବ । ତୁମେ ସବୁ ଠିକ୍ କରି କହିଲେ, ସେ ତୁମକୁ ତାର ପ୍ରିୟ-ପାତ୍ର କରି ରଖିବ । ତା ପରେ ଦେଖିବା । ବୁଝିଲ ? ଏଥର ଆସ । ଜିନିଷ ଦେଖି ଭୟ କରିବ ନାହିଁ । ମତେ ଜାଣ ବୋଲି ଜଣାଇ ଦେବ ନାହିଁ । ଆସ ।"

—୭—

ଉଭୟେ ରାସ୍ତାରେ ପଡ଼ିଲେ । ପ୍ରଥମେ ଚାଲି ଚାଲି କିଛି ବାଟ ଗଲାପରେ ଗୋଟିଏ ଛୋଟ ଗଳି ପଡ଼ିଲା । ସେଥିରେ ଗୁରୁଣ୍ଡି ଗୁରୁଣ୍ଡି ଚାଲିଲେ । କିଛିବେଳ ଏହିପରି ଗଲାପରେ ଗୋଟିଏ ପ୍ରଶସ୍ତ ରାସ୍ତା ପଡ଼ିଲା । ତାର ଦୁଇ ପାଖରେ ଘର, କିନ୍ତୁ ସେ ଘରେ କେହି ଥିବା ପରି ଜଣାପଡ଼ୁ ନ ଥିଲା । କବାଟ ଗୁଡ଼ାକ ଏକାବେଳକେ ପଥର ସଙ୍ଗରେ ଲଗି ରହିଥିଲା ।

ରବି କହିଲା, "ଏଥିରେ ବଦମାସ୍‌ର ଯେଉଁ ଚାକର ଅଛନ୍ତି ସେମାନେ ଥାଆନ୍ତି ।"

ଘର ଗୁଡ଼ିକ ପାର ହେବାପରେ ଆଉ ଗୋଟିଏ ଗଳି ପଡ଼ିଲା । ସେଠାରେ ଜଣେ ଭୀମକାୟ ଲୋକ ବର୍ଛାଟିଏ ଧରି ଠିଆ ହୋଇଥିଲା । ରବିକୁ ଦେଖି ମୁଣ୍ଡ ନୁଆଁଇ ପ୍ରଣାମ କଲା ଏବଂ ବାଟ ଛାଡ଼ି ଠିଆ ହେଲା ।

ଏମାନେ ପୁଣି ଆଗେଇଲେ । ସେଇଟା ପାରହେବା ପରେ ଆଉ ଜଣେ ଜଗୁଆଳକୁ ଭେଟିଲେ । ସେ ମଧ୍ୟ ସେହିପରି କରି

ବାଟ ସ୍ପଷ୍ଟ ହେଲା । ସେମାନେ କିଛି ଦୂର ଅଗେଇଛନ୍ତି କି ନାହିଁ, ଭୟଙ୍କର ଶବ୍ଦ ଏବଂ କରୁଣ ଚିତ୍କାର ଶୁଣାଗଲା ।

ରତ୍ନ ସେ କରୁଣ ଚିତ୍କାର ଶୁଣି କହିଲା, "ସୁରବାବୁ ଦେଖିବେ ଅସନ୍ତୁ ଶୂଳୀ ଦଅପାଉଛନ୍ତି ।"

ସୁର କହିଲା, "କାହାକୁ ? କାହିଁକି ?"

ରତ୍ନ ହସି ହସି କହିଲା, "କାହିଁକି ? ଜମିଦାରଙ୍କ ବିପକ୍ଷରେ କେହି ଜଣେ ଉଠିଥିବ ବୋଲି ଏବଂ ସେ ଜଣକ ଏହି ଦଳ ମଧ୍ୟରୁ ଜଣେ ।"

ସୁର ଦୁଃଖର ସହିତ କହିଲା, "ମତେ କ୍ଷମା ଦେବେ ରତ୍ନବାବୁ । ମୁଁ ସେ ମୃତ୍ୟୁ ଦେଖି ପାରିବି ନାହିଁ । ଓଃ ! ଏହା ପୂର୍ବରୁ ମୋର ମୃତ୍ୟୁ ହେଲା ନାହିଁ କାହିଁ ?"

ନର କହିଲା, "ଧୈର୍ଯ୍ୟ ଧର ସୁର ଭାଇ" ।

ତା ପରେ ସମସ୍ତେ ପୁନର୍ବାର ଅଗେଇଗଲେ । କରୁଣ ଚିତ୍କାର ହଠାତ୍ ବନ୍ଦ ହୋଇଗଲା ।

ନର ଉତ୍କଣ୍ଠା ସହିତ ପଚାରିଲା, "କଣ ହେଲା ରତ୍ନବାବୁ ?"

ରତ୍ନ କହିଲା, "ଲୋକଟିର ମୃତ୍ୟୁ ହୋଇଯାଇଛି ।"

ନର ରାଗରେ କହି ଉଠିଲା, "ବଦମାସ୍ ଜମିଦାର ଏତେ କାପୁରୁଷ, ଏତେ ହୀନ । ନିଜର ଭାଇ ବନ୍ଧୁମାନଙ୍କୁ ପଶୁପରି ହତ୍ୟା କରୁଛନ୍ତି । ରତ୍ନବାବୁ ତୁମେ କିପରି ବଞ୍ଚିଛ ?

ରତ୍ନ ହସି ହସି କହିଲା, "ଜମିଦାର ମତେ ଟିକିଏ ଭୟ କରେ । ମତେ ଦେଖିଲେ ତା ହାଡ଼ ଶୁଖାଇ ହୁଏ । ଏ ଦେଶିଁ ଦୁଇ ଜଣ ମୋତେ ଜୁହାର କଲେ, ଏମାନଙ୍କୁ ମୁଁ ମୋର ତଳେ ରଖିଛି, ପ୍ରତିଶୋଧ ନେବାକୁ । ଅଚ୍ଛା, ଚାଲ ଡେରି ହେଉଛି ।"

କିଛି ବାଟ ଗଲାପରେ ଘୁ ଘୁ ଗର୍ଜ୍ଜନ ଶୁଣାଗଲା । ବହୁତ ଲୋକଙ୍କର ପାଟି ମଧ୍ୟ ଶୁଣାଗଲା ।

ନର ପଚାରିଲା, "ଏ କଣ ?"

ରବ କହିଲା, "ରନ୍ଧନାଗାର ଏଠାରେ ସବୁ ପଦାର୍ଥ ତିଆରି ହୁଏ । ଏଥିରେ କେବଳ ସ୍ତ୍ରୀ ଲୋକମାନେ କାମ କରନ୍ତି । ଅମର ପ୍ରବେଶ ନିଷେଧ ।

ନର ପଚାରିଲା, "ଆମେ କଣ ଦେଖି ପାରିବୁ ନାହିଁ ?"

ରବ କହିଲା, "ହଁ ମୋତେ ଛାଡ଼ । ଭୁଲ ବୁଲେଇ ଅଣିବ । ଭୟ କରିବ ନାହିଁ ।"

ନର କହିଲା, "ଭୟ କରିବୁ ? ସ୍ତ୍ରୀ ଲୋକମାନେ ଯେଉଁଠାରେ କାମ କରୁଛନ୍ତି, ଅମର ସେଠାରେ ଭୟ । ବଡ଼ ହସ ମାଡ଼ୁଛି, ତୁମ କଥା ଶୁଣି ରବବାବୁ ।"

ରବ କହିଲା, "ନା, ସେମାନଙ୍କ ହୃଦୟ ପାଷାଣ ହୋଇ ଗଲାଣି । ସ୍ତ୍ରୀ ଲୋକମାନେ ପୁଣି ଏପରି ହୁଅନ୍ତି ? ଏଇ, ଆମେ ତାର ଗୋଟିଏ ଦୁଆର ମୁହଁରେ ପହଞ୍ଚିଲୁ । ଏବାଟେ ପଶି ପଛ ବାଟେ ବାହାର ଯିବା । ଉଚ୍ଛୁର ହେଉଛି । ପୁଣି ଇମ୍ପିଦାରଙ୍କ ପାଖକୁ ଯିବାକୁ ହେବ । ଡେରି ହେଲେ ସର୍ବନାଶ । ଶୀଘ୍ର ଅସ । ସେତେବେଳକୁ ୧୧ଟା ବାଜୁଛି । ୧୨ଟାରେ ଇମ୍ପିଦାରଙ୍କ ନିକଟରେ ପହଞ୍ଚିବାକୁ ହେବ ।

ତିନିହେଁ ଦ୍ରୁତଗତିରେ ଭିତରକୁ ପଶିଲେ । ରବ ସହିତ ନୂତନ ବ୍ୟକ୍ତି ଦୁଇଜଣଙ୍କୁ ଦେଖି, ସୁମତି କଣ ତିଆରି କରୁଥିଲା, ଦଉଡ଼ି ଅସି କହିଲା, "ରବବାବୁ ତୁମ ସଙ୍ଗରେ ଏ ନୂତନ ଅଭ୍ୟାଗତ ଦୁଇଜଣ କିଏ କେବେ ଅମଦାନୀ ହେଲେ ମ ? ଏଠାକୁ ତ କେବେ ଅଣ ନାହିଁ ?"

ରବି ସ୍ୱଗତରେ କହୁଲ, "ତୁମର କଣ ଅଖି ନାହିଁ, ଏସବ କଥା ଗୁଡ଼ାକ କହୁଛ ?"

ସୁମତୀ ହସି ହସି କହିଲା, "ମୁଁ ପଚାରୁଥିଲି ନା, ତୁମେ ଏସବ ସାଟି ଯାଉଛ କାହିଁକି ? ହଉ ହେଲା ଅମର ବଡ଼ ଦୋଷ । ହିଁ ଲୁଅଡ଼େ ଅସିଛ ?"

ରବି ଗମ୍ଭୀର ହୋଇ କହିଲା, "ଏ ଦୁଇଜଣଙ୍କୁ ବନ୍ଦୀଶାଳ-ଗାର ଏବଂ ତୁମ୍ଭମାନଙ୍କର ହାତ କୌଶଳ ଦେଖାଇବାକୁ ଅଣିଥିଲି ।"

ସୁମତୀ କହିଲା' "ହଉ ଦେଖାଅ ।"

ରବି ଡାକିଲା, "ଯୁବବାବୁ ଅସ ।"

ଟିକିଏ ଅଗକୁ ଯାଇ କାନ୍ଥ ପାଖରେ ଗୋଟିଏ ତକ ଲାଗି-ଥିବା ଦେଖି ରବି କହିଲ, "ଏଇଟା କଣ କଣ ?"

ସୁବ ଅଶ୍ଚର୍ଯ୍ୟ ହୋଇ କହିଲା, "ଜାଣିବୁ କପରବ ?"

ରବି କହିଲା, "ଏଇଟାକୁ ଘୁରାଇଲେ, ଏହି ବନ୍ଦୀନାଗାର ପେସ ପାଖରେ ଶୂଳୀ ଦେବା ଘର ଅଛି । ସେଥିରେ ଶୂଳୀ ଦିଆଯାଏ । ଶୂଳୀଘରକୁ ଗଲେ ସବୁ ଦେଖାଇ ଦେବ । ଏ ହିଁ ତାଡ଼ୁ କଳଟାକୁ ମଧ୍ୟ ଦେଖି ଥାଅ ।"

ଯାହା ଦେଖିବାର ଥିଲା ବନ୍ଦୀନାଗାରରେ, ତା ସବୁ ଦେଖି ରବି, ସୁର ଏବଂ ନର ଅଗେଇଲେ ।

ବନ୍ଦୀନାଗାର ପାଖରେ ଅଉ ଗୋଟିଏ କୋଠରୀ । ନର ସେ ଘର ଦୁଆର ମୁହଁରେ ରକ୍ତଚିହ୍ନ ଦେଖି ପଚାରିଲା, "ଏ କଣ ?"

ରବି ଉତ୍ତର ଦେଲା, "ବର୍ତ୍ତମାନ ଯେଉଁ ଲୋକଟାକୁ ଶୂଳୀ ଦିଅଗଲା, ତା ଏହି ଘରେ ଏବଂ ଏ ରକ୍ତ ତାର ।"

ଜଗର ଦେହ ଉପରେ ସ୍ଥିର ପ୍ରବେଶ ପଡିଲା । ସେ ଆଉ ଆଗକୁ ଯିବାକୁ ପାରିଲା ନାହିଁ ।

ରବି କହିଲା, "ତେବେ ବଳେ କଣ ଅଛନ୍ତି । ଆମର ବା କଣ ଯୁ ଅଛୁ । ବେଳ ହେଉଛୁ । ଆସ ।"

ସମସ୍ତେ ଭିତରକୁ ପଶିଲେ । ପଥର କାନ୍ଥ ଦେହରୁ ଖଣ୍ଡିଏ କଟା ଯାଇଛି । ଜଣେ ଲୋକ ଶୋଇବା ଭଳି ୨।୮ ହାତ ଉପରକୁ ଆଉ ଖଣ୍ଡିଏ ପଥର ଓହଳିଛି । ସେଥିରେ ଏ ମୁଣ୍ଡରୁ ସେ ମୁଣ୍ଡଯାଏ ତୀକ୍ଷ୍ଣ ଛୁରୀ ଫୋଡ଼ା ହୋଇଛି । ସେଥିରେ ରକ୍ତ ଲାଗିଛି ।

ରବି କହିଲା, "ସେ ଯେଉଁ ପ୍ରଥମ ଚକଟା ଦେଖାଇଲି, ସେଇଟାକୁ ଘୁରାଇଲେ ଏଇଟା ତଳକୁ ଖସି ଆସିବ । ଯାହାକୁ ଶୂଳୀ ଦେବା କଥା, ତାକୁ ଏଥିରେ ଶୁଆଇ ଦିଆଯିବ ଜବରଦସ୍ତି କରି । ଅସ୍ତେ ଅସ୍ତେ ଏ ପଥରଟା ଆସି ଛୁରୀ ସହ ଏ ମଣିଷ ଉପରେ ପଡ଼ିବ । ସେଥିରେ ମନୁଷ୍ୟର ଅବସ୍ଥା ଯା ହୁଏ, ତାହା ସହଜରେ ଅନୁମାନ କରିବାର କଥା ।

ଜଗ ଏ ସବୁ ଦେଖି କହିଲା, "ରବି ବାବୁ ଶୀଘ୍ର ଏ ଘରୁ ଚାଲ । ମୋ ଦେହ କଣ ହୋଇଯାଉଛି ।"

ରବି ସମସ୍ତଙ୍କୁ ସେ ଘରୁ ନେଇ ଆସିଲା ।

ତାପରେ ଆଉ ଗୋଟିଏ ଘର । ସେହିପରି ଶୂଳୀ ଘର । ସେ ମଧ୍ୟ ସେହି ପ୍ରକାରରେ ତିଆରି । ଗୋଟିଏ କାନ୍ଥ ଦେହରେ ଖଣ୍ଡିଏ ପଥର ଲାଗିଛି । ଯାହାକୁ ଶୂଳୀ ଦିଆ ହେବା କଥା, ତାକୁ ଏଥିରେ ବାନ୍ଧି ଦିଆଯାଏ ଏବଂ ଦ୍ୱିତୀୟ ଚକଟାକୁ ଘୁରାଇଲେ ଏ ପଥରଟି ଆଗକୁ ଆଗକୁ ଘୁଞ୍ଚେ । ସେପଟରେ ଅନ୍ୟ ଗୋଟିଏ ପଥର ଦେହରେ କେତେ ଗୁଡ଼ାଏ ତୀକ୍ଷ୍ଣ ଛୁରୀକା ଫୋଡ଼ା ହୋଇଥାଏ, ସେଥିରେ

ବାହାରି ହୋଇଯାଏ ଏବଂ ସେ ଲୋକଟାର ଦେହ ଚୂନା ହୋଇ ଯାଏ ।

ବାସ୍ତବିକ ବ ଉପ୍ସ୍ଥିତର ଜ୍ଞାନ ଏ ଗୁଡ଼ିକୁ ଦେଖିଲେ ତାହାର ଗୁଡ ଇଲିପି ନ ରହେ ।

ହଠାତ୍ ସୁର ପଚାରିଲ, "ଅଚ୍ଛା, ରଣ ବାବୁ କେବେ ଏହା ଜାଣି ସୁଦ୍ଧା ଏଠାକୁ କାହିଁକି ଆସନ୍ତି ?"

ରବ ହସି ହସି କହିଲ, "କେହି ଜାଣନ୍ତି ନାହିଁ, ଯେପରି ତୁମ୍ଭେମାନେ ନ ଜାଣି ଏଠାକୁ ଆସିଛ । କେବଳ ପ୍ରଲୋଭନ । ଦେଉଛ ଦେଲେ ଜବରଦସ୍ତ ।"

ସୁର ସହ୍ୟ ପାରିଲ ନାହିଁ । ସେ ଅସ୍ପଷ୍ଟ କଣ୍ଠରେ କହି ଉଠିଲ, "ଜମିଦାର ! ତୁ ଏତେ ଲୋକଙ୍କୁ ଏପରି ଭାବରେ ହତ୍ୟା କରୁଛୁ, ମୁଁ ଯଦି ତୋତେ ସେହିପରି ଭାବରେ ହତ୍ୟା ନ କରେ ତେବେ ମୋ ନାମ ଜୀବନ ନୁହେଁ ।"

ଟେଳେଟେଳକୁ ସମସ୍ତେ ସେ ଘରୁ ବାହାର ଆସିଲେଣି ।

ତାପରେ ଗୋଟିଏ ଗଳି ଆରମ୍ଭ ହେଲ । କଟି କଟି ଅନ୍ଧାର, ମୁହଁକୁ ମୁହଁ ଦେଖାଯାଉନାହିଁ । ରଣ ଟର୍ଚ୍ଚ ମାରି ମାରି ଆଗକୁ ଚାଲିଲ ।

କେତେ ସିଧା ଏବଂ କେତେ ବଙ୍କା ଗଳି ଦେଇ, ସେମାନେ ଗୋଟିଏ ବଡ଼ କୋଠରୀ ନିକଟରେ ପହଞ୍ଚିଲେ ।

ମନ୍ତ୍ରବତ୍ ତାଲା ଗୃହଦ୍ୱାରେ ପଡ଼ିଛି । ରବ ତାଲା ଖୋଲି ଦେଲ ଏବଂ ସଙ୍ଗେ ସଙ୍ଗେ ଟର୍ଚ୍ଚ ଲାଇଟ୍ ଲଗାଇ ଦେଲ ।

ଅନ୍ଧାରରେ ଜକ୍ ଜକ୍ ହୋଇ ବହୁତ ଗୁଡ଼ାଏ କଣ ଦେଖାଗଲା ।

ସୁର ପଚାରିଲା, "ଏ ଗୁଡ଼ାକ କଣ ରବିବାବୁ ?"

ରବି ଠୋ ଠୋ ହୋଇ ହସି ଉଠିଲେ ।

ସୁର ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ହସିଲ ଯେ ?"

ରବି ହସ ବନ୍ଦ କରି କହିଲେ, ଆଉ କଣ କାନ୍ଦିବ ।"

ସୁର ପଚାରିଲା ମୁଁ ତ କିଛି ବୁଝି ପାରୁ ନାହିଁ !"

ରବି ପୁନର୍ବାର ହସି କହିଲେ, "ଠଗମାନଙ୍କ ଧନ, ସୁନାରୁପା ଟଙ୍କା ପଇସାରେ ଘରଟି ପୂର୍ଣ୍ଣ । କେତେ ଦାମୀ ସ୍ତ୍ରୀଙ୍କର ଗହଣା, ଦାମିକା ପଦାର୍ଥ, ମୂଲ୍ୟବାନ ଶାଢ଼ୀ, ଲୁଗା ପ୍ରଭୃତିରେ ଘରଟି ପୂର୍ଣ୍ଣ । ଆଜ ହସିବ ନାହିଁ ତ'ଣ କାନ୍ଦିବ ?

ସୁର ଏ ସବୁ ଦେଖି କହିଲା, "ତେବେ ଏହାର ଭିତରେ ଏମାନଙ୍କ ସମାବେଶ ହେଉଛି ନା ?"

ରବି ମୁଣ୍ଡ ହଲାଇଲେ ।

ତା ମଝିରେ ଆଉରି ଗୋଟିଏ ଘର । ଘରଟି ଖୋଲିଗଲା ।

ନର ଏ ସବୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲା ।

ଗୁଳି, ବାରୁଦ, ପିସ୍ତଲ, ଛୁରୀ, ମେଡ଼ସିନ୍ ପ୍ରଭୃତିରେ ଘରଟି ପୂର୍ଣ୍ଣ । ଏ ସବୁ ଦେଖିଥାଇ ରବି ହାତର ଘଣ୍ଟାକୁ ଅନାଇ ଦେଖିଲେ ଆଉ ଷୋଡ଼ଏ ମିନିଟ୍ ବାକୀ ଅଛି ।

ଆଉରି ଗୋଟିଏ ଜିନିଷ ଦେଖିବାକୁ ହେବ ।

ସୁର ନରଙ୍କୁ ନେଇ ରବି ପୁନର୍ବାର ଆଗେଇଲେ ।

ପୁଣି ଅନ୍ଧାରରେ ଭେତର ବାଟ, ଏ ବାଟ ଦେଇ ଆସି ପହଞ୍ଚିଲେ ଗୋଟିଏ ଖୁବ୍ ବଡ଼ କୋଠରୀ ଭିତରେ । ସେଠାରେ ପାହାରା ଜଗୁଅଛି । ସମସ୍ତଙ୍କ ହାତରେ ତୀକ୍ଷ୍ଣ ଛୁରୀ ଏବଂ ପିସ୍ତଲ ।

ଭିତରେ ମନ୍ତ୍ରପାଠ ଶୁଣାଗଲା ।

ଜଗ ପଗ୍ଚରଲ, "ଏ ଭଣ ଭବ ବାବୁ ?"

ରବ କହିଲ, "ଭିତରକୁ ଅଗ ଆସ, ସବୁ ଦେଖିସାର ତା ପରେ କହିବ ।"

ସମସ୍ତେ ଭିତରକୁ ପଶିଲେ ।

ଘରଟି ମସ୍ତବଡ଼ । ଆଲୋକରେ ଭର୍ତ୍ତି । ଗୋଟିଏ କଡ଼ରେ ମସ୍ତବଡ଼ ପାଷାଣ ମୂର୍ତ୍ତି । ମୂର୍ତ୍ତି ଦେଖିଲେ ଜଣାପଡ଼ ସତେ କି ସେପରି ଜୀବନ୍ତ ପ୍ରତିମା । କି ଭୀଷଣ ରୂପ । ସିନ୍ଦୂର ଚନ୍ଦନରେ ମୂର୍ତ୍ତି ପୂର୍ଣ୍ଣ ହୋଇ ଅଦ୍ଭୁତ ଦିଶୁଛନ୍ତି ଦେଖା ଯାଉଛି । ତାଙ୍କ ଚାରିପାଖ ଜଳକୁ ବେଲ ପତ୍ର ଏବଂ ମନ୍ଦାର ଫୁଲ ପ୍ରଚୁରରେ ପୂର୍ଣ୍ଣ ହୋଇ ରହିଛି । ଜଣେ ପୁରୋହିତ ବସି ହୋମ କରୁଛନ୍ତି । ତାଙ୍କର ଅନ୍ୟ କଡ଼ରେ ଗୋଟିଏ ମସ୍ତ ବଡ଼ ଖଡ଼୍ଗ ଜେର ହୋଇଛି । ସେଥିରେ ସିନ୍ଦୁର ଦିଆହୋଇ ଦର୍ଶକମାନଙ୍କ ମନରେ ଭୟ ସୃଷ୍ଟି କରୁଛି ।

ଏ ସବୁ ଦେଖି ତିନିହେଁ ସେ ଘରୁ ବାହାର ଆସିଲେ ।

ଅଳ୍ପ ଦଣ୍ଡ ମିଳାଟ ।

ଠିକ୍ ବାଂଶ୍ଚା ବେଳଲ ଜ ପହଞ୍ଚିଲେ ଟ୍ରେନ୍ ବପଡ଼ ।

ରବ କହିଲ, "ଶୀଘ୍ର ଚାଲ । ଡେରି ହୋଇ ଯାଉଛି ।"

ତିନିହେଁ ପାଦକୁ ଚଞ୍ଚଳ କରିଦେଲେ ।

ରବ ଆରମ୍ଭ କଲ, "ଜମିଦାର ପ୍ରତିଦିନ ସେ ମୂର୍ତ୍ତିଟାକୁ ପୂଜା କରେ ସବୁଠାରୁ । ସେ ଅଲ୍ପ ମଧ୍ୟ ପୂଜା କରି ସାରିଲେଣି ।

ସେ ଗୋଟାଏ କଣ ସାଧନା କରୁଛି । ପ୍ରତି ଅମାବସ୍ୟାରେ ସେ ନରବଳି ଦିଏ ନିଜ ହାତରେ, ଏହି ଖଡ଼୍ଗ ସାହାଯ୍ୟରେ । ଅବିବାହିତ କୁମାର । ବୁଝି ପାରୁଛ ?"

ଜଗ ପଗ୍ଚରଲ, "କାହିଁକି ?"

ରବି ପଚାରିଲା, "ତା ପରେ କଣ ହେବ ?"

ସୁରର ଆଖି ଜଳି ଉଠିଲା । କନ୍ଦୁ ପକେଟରୁ ସ୍କୁଣ୍ଡି ତାର ଚୋପ ଦମାଇ ଦେଇ କହିଲା, "ବଦମାସ୍ ଏସବୁ କାର୍ଯ୍ୟ କରୁଛନ୍ତି ଏଠାରେ ବସି ବସି ! ଅଚ୍ଛା । ନା, ନା, ରବିବାବୁ ଏହା ଏକବାର ଅସହ୍ୟ । ମୁଁ ଯଦି ଏ ବଦମାସ୍‌ମାନଙ୍କୁ ହାତରେ ପାଆନ୍ତି ତେବେ ତଣ୍ଟି ଚିପି ମାରି ଦିଅନ୍ତି ।

ରବି କହିଲା, "ଆମ୍ଭେମାନେ ଜମିଦାରଙ୍କ ନିକଟରେ ପହଞ୍ଚି-ଲଣି । ସେପରି ଅଉ କୁହନା । ହଁ ଆଉ ଗୋଟାଏ କଥା କହିବାକୁ ଭୁଲି ଯାଇଛି ।"

ନର ପଚାରିଲା, 'କଣ' ?

ରବି କହିଲା, "ଜମିଦାର ତୁମକୁ ଗୋଟିଏ ଗୋଟିଏ ପ୍ରଶ୍ନ ପଚାରିବେ । ତା ପରେ ପଚାରିବ ମୁଁ ଯଦି ତୁମକୁ ବର୍ତ୍ତମାନ ଶୂଳୀ ଦେବାକୁ କୁହେ, ତୁମେ ପ୍ରସ୍ତୁତ ତ ? ତୁମ୍ଭେମାନେ ସେଥିରେ ସଙ୍ଗ ହୋଇଯିବ । କାରଣ ଭୟ କଲେ ସେ ତୁମକୁ ଶୂଳୀ ଦେବ ।"

—୨—

ବାରଟା ବାଜିବାକୁ ଦୁଇ ମିନିଟ ଅଛି, ହଠାତ୍ ଏମାନେ ଯାଇ ଜମିଦାରଙ୍କ କୋଠରି ଭିତରେ ପଶିଲେ । ଜମିଦାରଙ୍କ କୋଠରି ଦେଖି ଏମାନେ ଆଶ୍ଚର୍ଯ୍ୟ ହୋଇଗଲେ । ବନ୍ଧୁକ-ବର୍ଚ୍ଛା ବନ୍ଧୁକ ଢାଲରେ ଘରଟି ପୂର୍ଣ୍ଣ । ତଳେ ମଖମଲ୍ ଗାଲିଚା ବିଛା ହୋଇଛି, ତାପରେ ଗଦି ଚୌକିମାନ ସଜିଛି । ଜମିଦାର ବସିଛନ୍ତି ସବୁଠାରୁ ଉଚ୍ଚରେ ଏବଂ ଭଲ ଆସନରେ । କର୍ମଚାରୀ ଗଣ ବସିଛନ୍ତି ତାଙ୍କ ତଳକୁ ନିମ୍ନ ଆସନରେ । ସମସ୍ତେ କଳା ପୋଷାକରେ ଭୂଷିତ, କଟିରେ ତୀକ୍ଷ୍ଣ ଛୁରୀଗୁଡ଼ାକ ଚକ୍ ଚକ୍ କରୁଛି ।

ରବି, ସୁର ଓ ନର ଯାଇ ସେଠାରେ ନିଜ ଆସନରେ ବସି ପଡ଼ିଲେ । କିଛି ସମୟ ପରେ ଘରଟି ନିସ୍ତବ୍ଧ ହୋଇଗଲା । ୫, ୧୦ ମିନିଟ ପରେ ଜମିଦାର ସୁର, ନରଙ୍କୁ ହାତ ଠାରି ଡାକିଲେ । ସୁର, ନର ଥରେ ଜମିଦାରଙ୍କୁ, ଥରେ ଉପସ୍ଥିତ ଜନତାଙ୍କୁ ଏବଂ ଥରେ ରବି ଆଡ଼କୁ ଚାହିଁ ଜମିଦାରଙ୍କ ପାଖକୁ ଗଲେ ।

ଜମିଦାର ଆସନରେ ବସି ଗମ୍ଭୀର ନାଦରେ କହିଲେ, "ଦେଖ ସୁର ନର, ତୁମକୁ ମୁଁ ଗୋଟିଏ ପ୍ରଶ୍ନ ପଚାରିବି ।"

ଦୁହେଁ ଖୁବ୍ ଆଗ୍ରହରେ କହିଲେ, "ଗୋଟାଏ କାହିଁକି ଯେତେ ପଚାରି ପାରନ୍ତି ।"

ଜମିଦାର ପଚାରିଲେ, "ଆଚ୍ଛା, ଯାହା ସବୁ ଦେଖିଲ ତାହା ଠିକ ଠିକ ବର୍ଣ୍ଣନା କର, ଯେପରି ଲୋକେ ଶୁଣି ତୁମମାନଙ୍କ ବର୍ଣ୍ଣନାକୁ ପ୍ରଶଂସା କରିବେ ।"

ନର କହିଲା, "ଏଇ କଥାତ — ବର୍ଣ୍ଣନା କଲେ । ଦୁହିଁଙ୍କ ବର୍ଣ୍ଣନା ଶୁଣି ସମସ୍ତେ କହିଲେ, "ଦେଖ୍ ଦେଖି ଅଛି କେବଳ ହୋଇଛି । ଅମ୍ଭର ଏଠୁ ଭାଇବନ୍ଧୁ ଜନ୍ମିଲ କି ।"

ବର୍ତ୍ତମାନ କୁହ, ସେ ଛାତ କଡ଼କୁ ଦେଖି ପାରୁଛ ?" ଜମିଦାର ପ୍ରଶ୍ନ କଲେ ।

ସୁର, ନର ଦେଖିଲେ ଅଦ୍ଭୁତ ଗୋଟାଏ ମସ୍ତବଡ଼ ଖଡ୍ଗ । ତେବେ ଖଡ୍ଗଠାରୁ ଖୁବ୍ ବଡ଼ ଏବଂ ଅଦ୍ଭୁତ ତୀକ୍ଷ୍ଣ । ଛାତରେ ଖଡ୍ଗଟି ଝୁଲୁଛି । କି ଭୟଙ୍କର ସେ ଦୃଶ୍ୟ ! ସୁର ଭାବିଲା, "ଏ ଖଡ୍ଗ ଅଛି ଆମ ମସ୍ତକରେ ପଡ଼ିବ ନାହିଁ ତ ?

ସେମାନଙ୍କର ଭାବନାକୁ ଭାଙ୍ଗି, ଜମିଦାର କହିଲେ, "ଦେଖି ପାରୁଛ ?"

ଜଗୁ କହିଲା, "ଆଜ୍ଞା ହଁ" ।

"ମୁଁ ଯାହା କହେ ଟେବଲ ତା ତଳେ ରଖିବାକୁ, ରଖିବ ?" ଜମିଦାର କହିଲେ ।

କହୁ କହୁ ଦୁଇବନ୍ଧୁ ଦଉଡ଼ି ଯାଇ ତା ତଳେ ଟେବଲ ରଖିଲେ ।

ଜମିଦାର ସଙ୍ଗେ ସଙ୍ଗେ ଆସନରୁ ଉଠି ଆସି ଦୁଇ ବନ୍ଧୁଙ୍କୁ ଉଠାଇ ନେଇ ବାହୁରେ ଚାପି ଧରି କହିଲେ, "ତୁମେ ଦୁହେଁ ଆଜିଠାରୁ ମୋର ବନ୍ଧୁ ହେଲ । ବର୍ତ୍ତମାନ ତୁମର ବାସସ୍ଥାନ ଆଉ ସେଣେ ନୁହେଁ, ଏଣେ ।" ଦିୱାନକୁ ଡାକି କହିଲେ, "ଏ ଦୁଇ ବନ୍ଧୁଙ୍କୁ ନେଇ ଯା, ମୋ ଘର ପାଖରେ ଯେଉଁ ଘରଟା ଖାଲି ଅଛି ସେଠାରେ ରହିବାକୁ ଦେ ।"

ତାପରେ ସଭା ଭଙ୍ଗ ହେଲା । ଏତେ ଲୋକ ମୁହୂର୍ତ୍ତକ ମଧ୍ୟରେ କୁଆଡ଼େ ଅଦୃଶ୍ୟ ହୋଇଗଲେ, ସୁର ନର ଜାଣି ପାରିଲେ ନାହିଁ ।

ତାପରେ ରବି ଡାକିଲା, 'ଆସ' । ଦୁଇବନ୍ଧୁ ଶୁଣିଲେ । ଘରର କଣରେ କଡ଼େ ଗୋଟିଏ ଦରଜା । ଦରଜାଟି ଖୋଲା ହେଲା । ଅନ୍ଧାର ଗଳି । ସଙ୍ଗେ ସଙ୍ଗେ ବତି ଭିତରେ ଝାଡ଼ଟି ଜଳି ଉଠିଲା । ସୁଡ଼ଙ୍ଗଟି ଆଲୋକମୟ ହୋଇଗଲା । ଗଳି ଭିତରେ ଥିବା ପାଣିରେ ଆଲୋକ ପଡ଼ି ଚକ୍ ଚକ୍ ଦେଖାଗଲା । ରବି କହିଲା, "ଭୟ କରନା ଆସ ।" ଗଳି ଭିତରେ ପାଦେ ପାଦେ ପାଣି ଏବଂ ପଙ୍କ ମଧ୍ୟ । ସେ ରାସ୍ତା ବାଟେ ଯିବାକୁ ଇଚ୍ଛା ହେଉ ନ ଥିଲେ ମଧ୍ୟ ଯିବାକୁ ବାଧ୍ୟ ହେଲେ । ବେଙ୍ଗ ଗୁଡ଼ାକ ଏଣେତେଣେ ଡେଇଁ ପଳାଉଥାନ୍ତି । କେଁ କଟର ଶବ୍ଦରେ କାନ ଅତଡ଼ା ପଡ଼ି ଯାଉଥାଏ । କି ରାସ୍ତା, କି ଗନ୍ଧ ସେ ଜାଗା, ବଡ଼ ଅସହ୍ୟ । ଲଣ୍ଠନ

ପୁଣି ଠେଲ ଠେଲ ଭିଡ଼ା । ପାଦରେ ଫୁଟି ଯିବାର ଭୟ । ତଥାପି ଧୀରେ ଧୀରେ ଅଗ୍ରସରିଲେ ସେଇ ଜନସନ୍ଦମୟ ମୁକ୍ତ ପଥରେ । ବହୁତ କଷ୍ଟରେ କିଛି ବାଟ ଅଗ୍ରସର ହେବା ପରେ ଖରାପ ବାଟ ସରି ଗଲା । ସଡ଼କ ସଫା ଆରମ୍ଭ ହେଲା । ଅଳ୍ପ ସମୟରେ କିଛି ବାଟ ଚାଲିଲେ । ରବି ପଚାରିଲା, "ସୁରବାବୁ ରେଖା ପାଖକୁ ଯିବ ?"

ସୁର ସେତେବେଳେ ଭାବୁଥିଲା କେଜାଣି, କିଛି ଶୁଣି ପାରିଲା ନାହିଁ ।

ରବି ପୁନର୍ବାର ପଚାରିଲା "କଣ କହୁଛ ସୁରବାବୁ ?"

ସୁରର ହୋସ ହୋଇ ଆସିଲା, ସେ ପଚାରିଲା "କେଉଁଠିକି ?"

ରବି କହିଲା, "ରେଖା ପାଖକୁ" ।

"ଏଁ ରେଖା !" ସୁର ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

ରବି କହିଲା, "ହଁ ରେଖା ପାଖକୁ, ସେ ଏଇ କଟକେ ଅଛି ।

ସୁର ଉଦ୍‌ବିଗ୍ନ ହୋଇ କହିଲା, "ମୋତେ ଶୀଘ୍ର ନେଇ ଚାଲ ରବିବାବୁ । ମୋର ତାକୁ ଦେଖିବାକୁ ଖୁବ୍ ଇଚ୍ଛା ଅଛି, ଶୀଘ୍ର ଚାଲ ।"

ରବି ଧୀରେ ଧୀରେ କହିଲା, "ଆଜି ନୁହେଁ ଦୁଇଦିନ ପରେ ମୁଁ ସବୁ ବ୍ୟବସ୍ଥା କରି ସାରେ କହିବି ।"

ସୁର ମୁହଁଟି ଶୁଖାଇ ଦେଲା, କରିବ କଣ ? ଦେଖିଛି ବା କେବେ, ଉପାୟ ଅଛି କଣ ? ବାଧ୍ୟ ହୋଇ ରବି କଥାରେ ରାଜି ହେଲା ।

କିଛି ବାଟ ଆସିଲା ପରେ ରବି କହିଲା, "ଦେଖିଲ ତୁମେ ତୁମେ ଏ ଘରେ ରହିବ, ଆଉ ମୁଁ ଅନ୍ୟ ଘରେ ରହିବି ।"

ନର କହିଲା, "ସତେ ।"

ରବି କହିଲା, "ଆଉ କଣ ମିଛ ।"

ସୁର ନରଙ୍କୁ ଗୁଡ଼ଣ୍ଡ ଦେଇ ରବି ତା କୋଠରୀକୁ ଚାଲିଗଲା । ସେଠାରେ ମଧ୍ୟ ଅଉ କେତେକ ଦମ୍ପତି ଥାନ୍ତି । ସେମାନେ ଦୁଇବନ୍ଧୁଙ୍କୁ ଦେଖି କହିଲେ, 'ନୂତନ ଅମଦାନୀ ସବୁ ।'

ରବି ସ୍ୱଗତରେ 'ହଁ' କରି ଚାଲିଗଲା ।

ସୁର ଏବଂ ନର ତାଙ୍କ କୋଠରୀକୁ ପଶିଲେ । ମଧ୍ୟବିତ୍ତ କୋଠରୀଟି । ଦୁଇଟି ଖଟ ପଡ଼ିଛି, ତା ଉପରେ ଗଦି । ଟେବୁଲଟିଏ ଗୋଟାଏ କଣକୁ ଘେରିଛି । ତା ପାଖରେ ଦୁଇଟି ମୂଲ୍ୟବାନ ଚେୟାର । ଘରଟିରେ ବିଜୁଳି ବତୀ ବିଜୁଳିପଙ୍ଖା ରହିଛି । ଟେବୁଲ ଉପରେ କେତେ ଖଣ୍ଡ ବହି ସଜା ହୋଇଛି । ଗୋଟିଏ ବଡ଼ ଥାଳିରେ ଖାଦ୍ୟ ସଜା ହୋଇ ଥୁଆ ହୋଇଥିଲା । ଦୁଇ ବନ୍ଧୁଙ୍କୁ ଖୁବ୍ ଭୋକ ହେଉଥିଲା । ବଡ଼ କ୍ଳାନ୍ତ ଲାଗୁଥିଲା । ଗଣ୍ଡେ ଗଣ୍ଡେ ଖାଇ ଦେଇ ଦୁଇ ବନ୍ଧୁ ଶୋଇ ପଡ଼ିଲେ ।

ଯେତେବେଳେ ରବିର ଡାକରେ ଦୁଇ ବନ୍ଧୁଙ୍କ ନିଦ ଭାଙ୍ଗେ ସେତେବେଳେକୁ ସନ୍ଧ୍ୟା ୬ଟା । ଦୁଇବନ୍ଧୁ ମୁହଁ ଧୋଇ କିଛି ଜଳଖିଆ କଲେ । ରବି ସିଗାରେଟ୍ ଖଣ୍ଡେ ଖଣ୍ଡେ ବଢ଼ାଇ ଦେଇ କହିଲା, "ସୁର ବାବୁ ବର୍ତ୍ତମାନ ମିଟିଂକୁ ଯିବାକୁ ହେବ ।"

ନର ସିଗାରେଟ୍‌ର ଧୂଆଁ ଛାଡ଼ୁ ଛାଡ଼ୁ ପଚାରିଲା, "ଫେର କି ମିଟିଙ୍ଗ୍ ।

ରବି କହିଲା, "ଧନେଶ ପାତ୍ରର କୋଠି । ହବ କଣ କେଉଁଠି ଚାଲି ତାହାର ଆଲୋଚନା ।"

"କଣ ବର୍ତ୍ତମାନ ?" ସୁର ପଚାରିଲେ ।

ରବି କହିଲା, "ହଁ ବର୍ତ୍ତମାନ । ଯେତେବେଳ ପର୍ଯ୍ୟନ୍ତ ଆମେ ତାଙ୍କ ଅଧୀନରେ ଅଛୁ, ସେ ପର୍ଯ୍ୟନ୍ତ ଆମେ ତାଙ୍କ କଥା ମାନିବାକୁ ବାଧ୍ୟ । କିନ୍ତୁ ଜାଣି ରଖ ସୁର ବାବୁ, ମୁଁ ତାର ପ୍ରତିଶୋଧ ଦିନେ ନା ଦିନେ ନେବି । ପ୍ରତିଶୋଧ ନ ନେଇ ମୁଁ ଏଠାରୁ ଯିବି ନାହିଁ । ସେ ମୋର କଣ ନ କରିଛି । ମୋର ସୁନ୍ଦର ପ୍ରାସାଦକୁ ଭାଙ୍ଗି ଚୁର-ମାର କରି ଦେଇଛି । ମୋର ସ୍ନେହମୟୀ ମାତାଙ୍କୁ ହତ୍ୟା କରିଛି, ପ୍ରାଣର ଭଉଣୀକୁ ହରଣ କରିଛି ଏବଂ ମୋତେ ଆଣି ରଖିଛି, ତୋଷାମ କରି । ମୁଁ ଦିନେ ଏଇ ସବଳ ହାତ ଦୁଇଟିରେ ତାର ସବ ଅହଂକାର, ଲାଳସା, କାମ ପିପାସା ଧ୍ୱଂସ କରିଦେବି ।" ରବି ସ୍ୱରରେ ଗର୍ଜି ଉଠିଲା ।

ସୁର ଆଶ୍ୱାସନା ଦେଇ କହିଲା- "ଧୈର୍ଯ୍ୟ ଧର ରବି ବାବୁ ଅସ୍ଥିର ହୁଅ ନା, ଡିନହେଁ ମିଳି, ଏପରି ଗୋଟିଏ ବ୍ୟୁହ ରଚନା କରିବା, ଯେଉଁଥିରେ କି ତାର ସମ୍ବନ୍ଧ ଚିରଦିନ ପାଇଁ ଲୁପ୍ତ ହୋଇଯିବ । ବର୍ତ୍ତମାନ ଶୁଣ, ହେଉ ଭୟ କରିବା ଠିକ୍ ନୁହେଁ ।

ତିନିହେଁ ବାହାରରେ ପୂର୍ବୋକ୍ତ ଘରକୁ ।

କେତୋଟି ଆସନ ଛଡ଼ା ଅନ୍ୟସବୁ ଦସ୍ୟୁମାନଙ୍କ ଦ୍ୱାରା ପୂର୍ଣ୍ଣ ହୋଇଛି । ରବି ପ୍ରଭୃତି ନିଜ ନିଜ ଆସନରେ ବସିଲେ ।

ସେ ଦିନ ହୋଟେଲର ମ୍ୟାନେଜର ସନ୍ଧ୍ୟା ବେଳକୁ ଆସିଥାଏ । ସମସ୍ତେ ବସି ସାରିବା ପରେ ସେ ନିଜ ଆସନରୁ ଉଠି ଖଣ୍ଡିଏ କାଗଜ ଧରି ଗମ୍ଭୀର ସ୍ୱରରେ କହିଲା, "ତୁମେମାନେ ଏଇଟା କଣ ଜାଣ ? ଏ[illegible] ଗୋଟିଏ ଖବର କାଗଜ । ଏଥିରେ କଣ ଲେଖା ଅଛି ଜାଣ ? [illegible] ତୁମେ କେହି ଜାଣ ନା, ତା[illegible] ଦେବାକୁ ମୁଁ ଏତେ ତତ୍ପ[illegible] ଅଛି ।" ଏହା କହି ପଢ଼ିବାକୁ ଆ[illegible] ।

## ରହସ୍ୟମୟ ଚୋରୀ

ଭାରତ ବିଖ୍ୟାତ ସିଆଇଡି ଅଶୋକ ବାବୁଙ୍କ କନ୍ୟା ଲତା ଦେବୀଙ୍କୁ କିଏ ଚୋରି କରି ନେଇ ଯାଇଛି । ଚାରିଟା ବେଳେ ଗାର୍ଲସ୍ ସ୍କୁଲରୁ ଫେରୁଥିବା ବେଳେ ସହସା ଅନ୍ତର୍ଦ୍ଧାନ । କେହି ଖୋଜି ଆଣି ଦେଲେ ୫୦   ଟଙ୍କା ପୁରସ୍କାର ପାଇବେ ।

ବିଜ୍ଞାପନଟି ପଢ଼ା ସରିଲା । ଜଣେ ତା ଆସନରୁ ଉଠି ପଚାରିଲା, "ତାକୁ କିପରି ଆଣିଲ ମ୍ୟାନେଜର ସାହେବ ?"

ମ୍ୟାନେଜର କହିଲେ, "ମୁଁ ଅକବରକୁ ରିକ୍ସା ଖଣ୍ଡିଏ ଦେଇ, ରିକ୍ସାବାଲା କରି ପଠାଇଲି । ଆଉ କେତେ ଜଣଙ୍କୁ କିଛି ଦୂରରେ ରଖାଇ ଦେଲି । ଅକବର ରିକ୍ସା ନେଇ ସେଠାରେ ଅପେକ୍ଷା କରି ରହିଲା । ଚାରିଟା ବାଜିଲା ପରେ ସ୍କୁଲ ଛୁଟି ହେଲା । ଅକବର ଏପରି ବେଶରେ ସଜ୍ଜିତ ହୋଇଥିଲା ଯେ, ତାକୁ ଦସ୍ୟୁ ବୋଲି କେହି ଜାଣି ନ ଥିଲେ । ଲତାଦେବୀ ଆସି ଫାଟକ ପାଖରେ ଠିଆ ହେଲା କ୍ଷଣି ଅକବର ଦୌଡ଼ି ଯାଇ କହିଲା, "ମା ଗାଡ଼ି ଦରକାର ?"

ଲତା ଦେବୀ ସଙ୍ଗେ ସଙ୍ଗେ ହଁ କରି ଦେଲେ । ତା ପରେ ଗାଡ଼ିରେ ବସି କହିଲେ ଚୌରଙ୍ଗୀ ଷ୍ଟ୍ରିଟ ।

ଗାଡ଼ି ଧାଇଁଲା ଏ ଗଳି ସେ ଗଳି ଦେଇ । ଗାଡ଼ି ଯେତେ-ବେଳେ ଗୋଟିଏ ପଡ଼ିଆ ପାଖରେ ଆସି ପହଞ୍ଚିଲା, ସେତେବେଳେ ଲତା ଦେବୀ ଚିତ୍କାର କରି ଉଠିଲେ । କିନ୍ତୁ ତାଙ୍କର ଚିତ୍କାର ଶୁଣୁଛି କିଏ ? ନିରୋଳା ସ୍ଥାନରେ ସମସ୍ତଙ୍କୁ ନେଇ ମୁଁ ପହଞ୍ଚି ଗଲି । ତାଙ୍କ ମୁହଁ ବାନ୍ଧି ଦେଲି । ଆଖିରେ ଅନ୍ଧପୁଟୁଳି ବାନ୍ଧି ଦେଲି ।

ଅଗଲୁ ଜାରଷ୍ଟା ଲଗ୍ନର କର ପାଖରେ ରଖାଇ ଥିଲି । ସେଥିରେ ଧୁଅଇ ଏଠାକୁ ନେଇ ଆସିଲି । ବର୍ତ୍ତମାନ ଲତା ଦେବୀ ଅଛି ଏଠାରେ । ଅଶୋକ ବାବୁଙ୍କ ମଜା ଜାଣିଲ ଯିବ ଯେ । ଏତେ ବଡ଼ ବଖ୍ୟାତ ସି ଆଇ ଡି ହୋଇ ନିଜର କନ୍ୟାକୁ ଉଦ୍ଧାର କର ପାରିଲେ ନାହିଁ । ଦେଖିଲ ମୁଁ କପର ତାଙ୍କ ଆଖିରେ ଧୂଳି ପକାଇ ଦେଇ ଚାଲି ଆସିଲି । ହା, ହା, ହା ।"

କ ବକଟ ସେ ହସ । ଶହ ଶହ ବୋମା ଏକାଠି ପଡ଼ିଲେ ଯେପର ଶବ୍ଦ ହୁଏ, ମ୍ୟାନେଜରର ହସ ଗମ୍ଭୀର ପଥର ଘରେ ଠିକ୍ ସେହିପର ପ୍ରତିଧ୍ୱନିତ ହେଲା ।

ସୁନ, ଜନ ଭାବିଲେ ତାଙ୍କ ଜୀବନରେ ସେ ଏପର ହସ କେବେ ଶୁଣି ନ ଥିଲେ ।

ଜମିଦାରଙ୍କର ବଜ୍ର ନିର୍ଘୋଷ ଶବ୍ଦ ଶୁଣାଗଲା, "ସାବାସ, ସାବାସ, ତା ନ ହୋଇଥିଲେ କ ତୁମକୁ ମୁଁ ଏ ସ୍ଥାନଟି ଦେଇ ଥାନ୍ତି । ଅଚ୍ଛା, ବର୍ତ୍ତମାନ କଣ କରାଯିବ । ସେ ପେରେ ଖୋଜା ଖୋଜି କରୁଛନ୍ତି କ ନାହିଁ ?"

ମ୍ୟାନେଜର ହସି ହସି କହିଲା, "ହଁ ପୋଲିସ ଏବଂ ଅନେକ ଲୋକ ଚେଷ୍ଟା କରୁଛନ୍ତି । ଅମ ହୋଟେଲକୁ କେତେତେ ପୁଲିସ ଆସିଥିଲେ, ଲତା ଦେବୀ ସେଠାରେ ଅଛନ୍ତି ସେ ପାଇବେ । ଚୂଡ଼ି ସ୍ଥାନ ଜାନମ୍ଭଣ୍ଡ ଆଞ୍ଜିସି ଫେରିଗଲେ ।

ଜମିଦାର ଉଠି ବସି ପୁନର୍ବାର କହିଲା, ସାବାସା, ସାବାସା । ବର୍ତ୍ତମାନ ସେ ବନ୍ଦୀ କପର ଅଛନ୍ତି ?

ଜଣେ ଦସ୍ୟୁ (ବୋଧହୁଏ ସେ ଜଣେ ଦ୍ୱାର ରକ୍ଷକ) ନିଜ ସ୍ଥାନରୁ ଉଠି ହାତ ଯୋଡ଼ି କହିଲା, "ଆଜ୍ଞା, ସେ କଥା ଆଜ ମଣିମା

କଣ କହିବ । ରେଖା ଦେବୀ ଏବଂ ଅଣା ଦେବୀ ନିଜ ନିଜ ଭାଇଙ୍କୁ ଝୁରି ଝୁରି କାଠକାଠ ପଡ଼ି ଗଲେଣି ଏବଂ ଲତା ଦେବୀ ତଳକୁ ମୁହଁ ପୋତି ସବୁବେଳେ କାନ୍ଦୁଛନ୍ତି । କେହି କିଛି ଖାଉ ନାହାନ୍ତି । କେତେବେଳେ ଦୁଧ ଟିକିଏ କେତେବେଳେ ବା ଫଳ ଦୁଇଟା ଖାଉଛନ୍ତି । କେତେବେଳେ ତିନିହେଁ ବସି କାନ୍ଦୁଛନ୍ତି, କେତେବେଳେ ଖାଲି ହସୁଛନ୍ତି । ସେମାନଙ୍କ ମୁହଁ ଦେଖିଲ ଷଣ୍ଡୀ ବଡ଼ ଭୟ ଲାଗୁଛି । ଶୀଘ୍ର ଏହାର କିଛି ପ୍ରତିକାର କରନ୍ତୁ । ନୋହିଲେ ତିନିହେଁ ଯାକ କେଉଁଠି ପାଗଳ ହୋଇ ଯିବେ ।" ଏହାକହି ସେ ବସି ପଡ଼ିଲା ।

ତା ପରେ ଜମିଦାର ଉଠି କହିଲେ, "ଅଚ୍ଛା, ମୁଁ ଆଜି ସେମାନଙ୍କ ପାଖକୁ ଯିବି । ରାତି ୧୨ଟା ବେଳକୁ ତୁ ଜାଗିଥିବୁ ?"

ତା ପରେ ଆଉ ଏଣୁ ତେଣୁ ଅନେକ କଥା ପରେ ସଭା ଭଙ୍ଗ ହେଲ । ସମସ୍ତେ ଯେ ଯାହାର ରୁମକୁ ଚାଲି ଗଲେ । ରବି, ସୁର ଓ ନବ ତିନିହେଁ ଯାକ ତାଙ୍କ ରୁମକୁ ଆସିଲେ । ଭିତରୁ କବାଟ ବନ୍ଦ କରି ଦେଇ ରବି କହିଲା, "ଦେଖନ୍ତୁ ସୁରବାବୁ ଆଜି ରାତି ୧୨ଟା ବେଳକୁ ଗୋଟାଏ କାମ ତୁମକୁ କରିବାକୁ ହେବ ।"

ସୁର ଆଗ୍ରହୀ ହୋଇ କହିଲା, "କଣ" ?

ରବି ଧୀରେ ଧୀରେ କହିଲା, "ତୁମେ ଲୁଚି ଲୁଚି ଡାକ୍ତର ଘରକୁ ଯାଇ ସାତ ନମ୍ବର ଆଲମାରିର ଉପରେ ଥାକର ଯେଉଁ ଔଷଧଟା ଥୁଆ ହୋଇଛି, ସେଟାକୁ ନେଇ ଆସିବ ?"

ସୁର ପଚାରିଲା, "କେଉଁ ଔଷଧ ?"

ରବି କହିଲେ, "କ୍ଲୋରଫାର୍ମ ।" ସେଥିରେ ଲେବୁଲ ମରା ହୋଇଛନ୍ତି । ଶୀଘ୍ର ଯାଇ ଆଣିବ । ଆମେ ତୁମ ଅପେକ୍ଷାରେ ବାହାରେ ଥିବୁ । ଜମିଦାର ତୁମ ଭଉଣୀଙ୍କ ପାଖରୁ ଅସିଲା ପରେ ଆମେ ଯାଇ ସମସ୍ତଙ୍କ ସଙ୍ଗେ ଦେଖା କରିବା । କିନ୍ତୁ ଯେପରି ଧୀର ରହିବେ । କେହୁ ଯେପରି ଜାଣି ପାରିବେ ନାହିଁ । କ୍ଲୋରଫର୍ମ ଦେଇ ଲୋକଙ୍କୁ ବେହୋସ କରି ସେମାନଙ୍କ ପାଖକୁ ଯିବା । ଜମିଦାର ନିଶ୍ଚୟ ତୁମ ଭଉଣୀକୁ କଷ୍ଟ ଦେଉଥିବ । ତାଙ୍କଠାରୁ ଆମେ ସବୁ ଜାଣି ପାରିବା । ହଉ, ଚାଲ ତୁମକୁ, ହଁ ହୁସିଆର ହୋଇ ଯେପରି କାମ କରିବ ।"

ଏଇପରି କଥାବାର୍ତ୍ତା ହୋଇ ହୋଇ ନିଜ ରୁମ ପାଖରେ ପହଞ୍ଚି ଗଲେ । ତିନିହେଁ ତାଙ୍କ ପାଖରୁ ବିଦାୟ ନେଇ ନିଜ ନିଜ ରୁମକୁ ଚାଲିଗଲେ ।

ନିସ୍ତବ୍ଧ ରାତି, ସ୍ତବ୍ଧ ଜଗତ, ଘଣ୍ଟା ୧୨ଟା, ଚାରିଆଡ଼େ କଟି କଟି ଅନ୍ଧାର । ମୁହଁକୁ ମୁହଁ ଦେଖାଯାଉ ନାହିଁ । କଳା ପୋଷାକରେ ଭୂଷିତ ହୋଇ ଗୋଟିଏ ଲୋକ ପିସ୍ତଲ ଏବଂ ଟର୍ଚ୍ଚଟାଏ ନେଇ ଧୀରେ ଧୀରେ ଆଗେଇଲା । ପାଠକମାନେ ଜାଣି ପାରୁଥିବେ, ଲୋକଟା କିଏ । ସୁରଜିତ ଆଉ କେହି ନୁହନ୍ତି । ଔଷଧାଗାରରେ ବୋତଲ ପଡ଼ିଛି । ସୁର ଯାଇ ବୋତଲଟିକୁ କିଛି ସମୟ ପରୀକ୍ଷା କଲା । ତାପରେ ଉପର ପକେଟରୁ ଗୁଡ଼ ବାହାର କରି ବୋତଲରେ ଦେଇ ପରୀକ୍ଷା କରିବାକୁ ଲାଗିଲା । ଖୁବ ଅଳ୍ପ ସମୟ ଭିତରେ ବୋତଲଟା ଖୋଲିଲା । ତାର ମନ ଆନନ୍ଦରେ ନାଚି ଉଠିଲା । କ୍ଲୋରଫର୍ମର ଗୁଡ଼ାଏଁକୁ ଗୁହିଁ ସେ ଉପରକୁ ଚଢ଼ିଲା । ଟର୍ଚ୍ଚମାରି ସାତ ନମ୍ବର ଆଲମାରି ପାଖକୁ ଗଲା । ଅତି ସହଜରେ ଆଲମାରି

ଖୋଲିଲା । କ୍ଲୋରଫର୍ମ ନେଇ ନିଜରୁମକୁ ଫେରି ଆସିଲା । ଅଜ ଅଲବାଃ ଅନ୍ଧ ନିଜ ରୁମରେ ପଢ଼ୁଥିବାରୁ, ଗୋଟାଏ ବଙ୍ଗାଳଭାସ୍ୱ ବ୍ୟକ୍ତି ଦେଖିବେ ଧକ୍କା ବାଜିଲା । ସେ ପାଟି କରି ଉଠେ, "ଜଏ ହିଂମାର ।"

କିନ୍ତୁ ସୁର ହିଂ ନ ମାରି ତୁଟ୍‌କରି ଫେରି ଆସିଲା । ବୋଧହୁଏ ତାପାଖରେ ଆଲୁଅ ନ ଥିଲା । ସେ ପଣ୍ଡାଳଙ୍କ ବେଳକୁ ଖାଦ୍ୟାଖିଲୁ ନ ପାଇ ମନକୁ ମନ କଣ ଗୁଡ଼ାଏ ଗପି ଗପି ଫେରିଗଲା । ସୁର ଦ୍ରୁତଗତିରେ ଆସି ତା ରୁମ୍‌ରେ ପଶିଗଲା । ରବି ଏବଂ ନରୁ ତା ଅପେକ୍ଷାରେ ବସିଥିଲେ ।

ରବି ପଚାରିଲା, "କଣ ଆଣିଲ ?"

ସୁର ମୁହଁରେ ହସ ଫୁଟି ଉଠିଲା । ସେ ପକେଟରୁ ଔଷଧ କାଢ଼ି ରବି ହାତକୁ ଦେଲା ।

ରବି କହିଲା, "ଖୁବ୍ ବଡ଼ କାମ କଲେ ସୁରବାବୁ ।" ଓ୍ୟାଚକୁ ଚାହିଁ ଦେଖିଲା ଠିକ୍ ଗୋଟାଏ ବାଜିଛି । ସୁରକୁ କହିଲା, "ଉପଯୁକ୍ତ ସମୟ, ଚାଲ ଆଜ ଡେରି କରି ଲାଭ ନାହିଁ ।



ତିନିହେଁ ଅଗପଛ ହୋଇ ଧୀରେ ଧୀରେ ଅଗେଇ ଚାଲିଲେ । ଭଗବାନଙ୍କର ଅସୀମ ଦୟାରୁ ସମସ୍ତଙ୍କ ଅଲକ୍ଷରେ ବିନା ବାଧାରେ ଯାଇଁ ବନ୍ଦୀଶାଳାରେ ପହଞ୍ଚିଲେ । ତିନିବନ୍ଧୁ ସେମାନଙ୍କର ଭଉଣୀଙ୍କୁ ଦେଖିବେ ବୋଲି ବ୍ୟସ୍ତ ହୋଇ ପଡ଼ିଲେ । କିନ୍ତୁ ବ୍ୟସ୍ତ ହେବାର ସମୟ ଏ ନୁହେଁ । ଛପି ଛପି ତିନିହେଁ ଆଗେଇଲେ । ପହରୀ ନିଶ୍ଚିନ୍ତରେ ଦୁଆର ପାଖରେ ବସି ଢୋଳଉଥିଲା । ଜମିଦାର

ସେତେବେଳକୁ ସ୍ୱଳ୍ପ ଗଲେଣି । ଏଥିପାଇଁ ତାର ଭାବନା କ ଦାନ ବାକୁ ନ ଥିଲା । ନରବ ଗୁିବ୍ ବଲ । ସେ ଔଷଧଟା ନେଇ ଡ଼େଇଁ ପଡ଼ିଲା ପ୍ରହରୀ ଉପରକୁ । ତାର ବିଶାଳ ବାହୁରେ ଚୁପି ଧରିଲା । ତାର ହାଲ ଚାଲ ହେବାର ଶକ୍ତ ନ ଥିଲା । ଔଷଧଟା ତାଠି ତା ନାକ ପାଖରେ ସଙ୍ଗେ ସଙ୍ଗେ ଦେଖାଇ ଦେଲା । ଚିତ୍କାର କରିବା ପୂର୍ବରୁ ପ୍ରହରୀ ଗାଢ ନିଦ୍ରାରେ ଢଳି ପଡ଼ିଲା । ରବ ଗୁଲ ଲଗାଇ କବାଟ ଖୋଲି ଦେଲା । ବତୁଲିକତାରେ ଅନ୍ଧାର ଘର ଆଲୋକିତ ହୋଇ ପଡ଼ିଲା ।

ଭଣ ଦେଖୁଛନ୍ତି ସେମାନେ, କ ମୃତ୍ୟୁର ଲୀଳ ଲଚିଛୁ । ଓାଦେ ହେଲେ ଅଗେଇ ପିବାକୁ କାହାର ଶକ୍ତ ପାଇଲା ନାହିଁ । ଛନେଟି କଙ୍କାଳ ନିଜ ନିଜ ଖଟ ଉପରେ ଶୋଇଛନ୍ତି । ଶୁଖି ଶୁଖି କଣ୍ଠା ରହି ଗଲଣି । ଗୋଟା ମୁହଁ କଳା ଅଡ଼ ଯାଇଛି । ସମସ୍ତଙ୍କର ଅଖିରୁ ଲୁହ ବୋହୁ ବୋହୁ ତବିଅ ଓଦା ହୋଇ ଯାଇଛି । ବ ବଦମାସ୍ ସେ ଜମିଦାର । ଏତେ ଘୃଣ, ଏତେ ନୀଚ, ନିଜର ଝିଅ-ମାନଙ୍କ ପ୍ରତି ଏଭ ବ୍ୟବହାର । କେଡ଼େ ମୂର୍ଖ ସେ । ତାର ପ୍ରତିଶୋଧ ନେବାକୁ ହେବ ଅଳ୍ପ ସମୟ ଭିତରେ । ସମସ୍ତଙ୍କ ମନରେ ଏଇ ଭାବ ଖେଳିଗଲା । ଅଳ୍ପ ସମୟ ଭିତରେ ଧାମ ନ ପାରିଲେ ପ୍ରହରୀ ଉଠି ଚିତ୍କାର କରିବ । ସମସ୍ତେ ଆସିଯିବେ । ସବୁ ଜାଣି ପାରିବେ । ତାପରେ ସୃଷ୍ଟି ହେବ ମହାଭାରତର ପ୍ରଥମ ଅଧ୍ୟାୟ । ରକ୍ତର ବନ୍ୟା ଭାସିଯିବ ଏଇ ଯୁଦ୍ର କୁଟୀର ଭିତରେ । ସମସ୍ତଙ୍କ ଆଖି ଜଳି ଉଠିଲା । ନା, ଅଉ ଡେରି କଲେ ଚଳିବ ନାହିଁ ।

ରବିର ଓାକରେ ରେଖା, ଅଶା ଏବଂ ଲତାର ନିଦ ଭାଙ୍ଗି ଗଲା । ସେମାନେ ଭାବିଲେ, "ବୋଧହୁଏ ଜମିଦାରଙ୍କ

ଅଞ୍ଚଳରେ ବଦମାସ୍ ମାନେ ଅସିଛନ୍ତି ତାଙ୍କ ସତୀତ୍ୱ ନଷ୍ଟ କରିବାକୁ । ସେମାନେ ଧାଡ଼ି କରିବାକୁ ଉଦ୍ୟତ ହେଲାବେଳେ ରବି କହିଲା, ଧାଡ଼ି କରନି, ଅମେ ତୁମର ଶତ୍ରୁ ନୋହୁଁ । ଦେଖିଲ, ଅମେ କିଏ । ଏହା କହି ତତକ୍ଷଣାତ୍ ବେଶ ବଦଳାଇ ଦେଲେ । ଅଶା ତା ଭାଇକୁ, ରେଖା ଜୀବନକୁ ଏବଂ ନବବାବୁଙ୍କୁ ଦେଖି କୁଣ୍ଢାଇ ପକାଇଲେ । କି ମଧୁର ମିଳନ ଭାଇ ଭଉଣୀଙ୍କ ମଧ୍ୟରେ । ଅହା ! ଭଗବାନଙ୍କର କି ମଧୁର ଲୀଳା ।

ହଠାତ୍ ଲତା କାନ୍ଦି କାନ୍ଦି କହିଲା, "ମୋ ବାପା ।"

ରବି ହଠାତ୍ ତା ପାଟିରେ ହାତ ଦେଇ କହିଲା, "ଚୁପ କର, ବ୍ୟସ୍ତ ହୁଅନା । ଅମେ ଯେପରି ରେଖା ଏବଂ ଅଶାର ଭାଇ, ତୁମର ସେହିପରି ଭାଇ ।"

ନବ କହିଲା, "ନା, ନା, ତା ହେବ ନାହିଁ । ଲତା ମୋର ସାନ ଭଉଣୀ, ତୁମର ତ ଭଉଣୀ ଅଛି । କିନ୍ତୁ ମୋର ସେ ଭଉଣୀ ନାହିଁ ।"

ରବି କହିଲା, "ହେଉ, ହେଲା । ତୋର କଥା ହେଉ ।"

ଲତା ଦଉଡ଼ି ଅସି ନବର ଗୋଡ଼ ତଳେ ପଡ଼ିଯାଇ କାନ୍ଦିଲା, ଭାଇ ! ନବର ଦୁଇ ଅଖିରୁ ଦୁଇଧାର ଲୁହ ଗଡ଼ି ପଡ଼ିଲା । ସେ ତାକୁ ଉଠାଇ ନେଇ ଅଖିରୁ ଲୁହ ପୋଛି ଦେଇ କହିଲା, "ସୁନାଟା ପରି କାନ୍ଦନା ।"

ତାପରେ ଭାଇ ଭଉଣୀମାନଙ୍କ ମଧ୍ୟରେ କେତେକ କଥା ଚାଲିଲା । ନବ କହିଲା, ଅମେ ଜାଣୁ, ଲତା ତତେ ୧୦ଠାରୁ ଉପର ଅଣା ଯାଉଛି । ଅମେ ଧାର ପ୍ରତିଶୋଧ ନେବୁ । ସେ ଶହ ଶହ ଭଦ୍ର ଘରର ଝିଅମାନଙ୍କୁ ନଷ୍ଟ କରି ଦେଇଛି । ଯଦିଓ ତୁମେ ଏପରି

ସ୍ୱଭାବରେ ଭଲ ଦେଖାଯାଉଛ, ତଥାପି ତୁମେ ଅଜେୟ ! ତୁମେ ଆଜି ରହୁଛ ସେଇ ଜମିଦାରର ପାପ ଜଳସାରୁ ଖୁବ୍ ଦୂରରେ । ତୁମେମାନେ ଦେବୀ ! ରାକ୍ଷସ କି କେବେ ଦେବୀମାନଙ୍କର ଅନିଷ୍ଟ କରି ପାରେ ? ଜମିଦାର ତୁମମାନଙ୍କର କିଛି କରି ପାରିବ ନାହିଁ ।"

ହଠାତ୍ ରବି କହିଲା, "ବେଶ୍ ତ ନବବାବୁ, ଆପଣ ବି ଗୋଟିଏ କବି ପାଲଟି ଗଲେଣି । ଆପଣଙ୍କ ଦ୍ୱାରା ଏସବୁ କାର୍ଯ୍ୟ କିଛି ହେବ ନାହିଁ । ବରଂ ଆପଣ ଯାଇ ବାହାରେ ଚର୍ଚ୍ଚା କଲେ ଖୁବ୍ ଶୋଭା ପାଆନ୍ତା ।"

ଏତେ ବିପଦ ମଧ୍ୟରେ ଥାଇ ମଧ୍ୟ ସମସ୍ତେ ହସି ଉଠିଲେ । କିନ୍ତୁ ତାହା କ୍ଷଣିକ ପାଇଁ ।

ତାପରେ ସମସ୍ତଙ୍କ ମଧ୍ୟରେ ବହୁତ କଥା ପଡ଼ିଲା । ଆଉ ଅଳ୍ପ ସମୟ, ପ୍ରହରୀଠାର ହୋସ୍ ଆସିଯିବ । ରବି ଯିବାକୁ ଚଞ୍ଚଳ ହେଲା । କିନ୍ତୁ ଏତେ ଦିନ ପରେ ଦେଖା । ଭଉଣୀମାନେ ଛାଡ଼ୁ ନ ଥାନ୍ତି । ଏଣେ ନ ଗଲେ ନ ହୁଏ ।

ସୁର ଉଠି କହିଲା, "ଆମେ ତ ତୁମମାନଙ୍କ ପାଖରେ ଅଛୁ । ଭୟ କାହିଁକି ? ଆମେମାନେ ସୁଯୋଗ ଖୋଜୁଛୁ, କେବଳ ସୁଯୋଗ ଆସିଗଲେ ସମସ୍ତେ ଏ ନରକ ପୁରୀରୁ ଚାଲିଯିବା ଏବଂ ଏ ବଦମାସଟାକୁ ମଧ୍ୟ ଉପଯୁକ୍ତ ଶିକ୍ଷା ଦେଇଯିବା । ହଁ ଆଉ ଗୋଟିଏ କଥା, ଆମେ ଏଠି ଅଛୁ ବୋଲି କେହି ଯେମିତି ଜାଣି ନ ପାରନ୍ତି । ଛଦ୍ମ ବେଶରେ ଆମେ ଏଠାରେ ଅଛୁ । ପୂଜା ଡାକୁ ସାଜି । ହଁ, ତୁମେମାନେ ନ ଖାଇ, ନ ପିଇ ନିଜର ଏତେ ସୁନ୍ଦର ଦେହକୁ ଏପରି କରି ସାରିଲଣି । ଏଥର ଭଲକରି ଖାଇବା ଆରମ୍ଭ କର । କିନ୍ତୁ ହୁସିଆର, ଜମିଦାର ଆସିଲେ ତା ପ୍ରତି

ଯେପରି ବ୍ୟବହାର କରୁଥିଲ ସେହିପରି କରିବ । ସେ ଯେପରି ଆମର ଟେର୍ କିଛି ଜାଣି ନ ପାରେ । ହସିଅର, ଆମେ ଯା଼ଉଛୁ ।”

ହଠାତ୍ ପଛରୁ ଲତା ନିର ହାତ ଧରି ଟାଣି କହିଲା, “ଭାଇ ଜମିଦାର କ’ଣ କହିଗଲା ବର୍ତ୍ତିମାନ ଜାଣ ?”

ଯାହା ତିନିହେଁ ଭୁଲି ଯିବାକୁ ବସିଥିଲେ ପୁନର୍ବାର ଶୁଣିବାକୁ ଠିଆ ହେଲେ ।

ଲତା ଆରମ୍ଭ କଲା, “ଜମିଦାର କହିଲେ, ଆମେ ତିନିହେଁ ଯଦି ଅମାବାସ୍ୟା ପୂର୍ବରୁ ତାର ଦାସୀ ହୋଇ ରହିବାକୁ ଅମଙ୍ଗ ହେଉ, ( ସୁମନ୍ତ ପ୍ରଭୃତିଙ୍କ ପରି) ତେବେ ଆମକୁ ଅମାବାସ୍ୟା ଦିନ ଅଦ୍ଭୁତ ଗୋଟିଏ କିଶୋର ସଙ୍ଗେ ବଳି ଦେବ । ଆଜି ଏହା ପ୍ରଚାର କରି ଯାଇଛି ।”

ସୁର ପଗ୍ଭରିଲା, “ତୁମେ କଣ କହିଲ ?”

ଅଶା କହିଲା, ଅମେ କହିଲୁ,“ସେଦିନ ମରିବୁ ପଛେ ତାହା କେବେ ହେବ ନାହିଁ ।’ ସେ ଏକବାରି ରାଗରେ ତମ୍‌ତମ୍ ହୋଇ ପଳାଇଲା ।

ସୁର ହସି ହସି ଅଶାର ମୁଣ୍ଡ ସାଉଁଳେଇ ଦେଇ ଦେଇ କହିଲା, “ସତେ, ଅଛି। ଏତେ ବଡ ଦମାକ୍, ତା ପୂର୍ବରୁ ତା ଗର୍ବ ଅମେ ଭାଙ୍ଗି ଦେବୁ ଯେ । ହଉ, ତୁମେମାନେ ଥାଅ ଅମେ ଯାଉଚୁ ।” ଦ୍ୱାର ପାଖରେ ପହଞ୍ଚି କବାଟ ଲଗାଇ ଦେଲେ ଏବଂ ଚୁପ୍ ଚୁପ୍ ହୋଇ ପ୍ରହରୀ ଚେତା ପାଇବା ପୂର୍ବରୁ ନିଜ ନିଜ ରୁମ୍‌କୁ ପଳାଇ ଅସିଲେ । ତିନି ଭଉଣୀ ମଧ୍ୟ ସାନ୍ତ୍ୱନା ପାଇ ସେଦିନ ଶାନ୍ତିରେ ନିଶ୍ଚିନ୍ତରେ ଶୋଇଲେ । ପ୍ରହରୀ ଉଠି ଦେଖିଲା ଯେ କବାଟ ବନ୍ଦ ଅଛି । ସେ ଭାବିଲା ଯେ ସମସ୍ତେ ନିଶ୍ଚିନ୍ତରେ ଶୋଇଛନ୍ତି । ଅଜି

କିଛି ଜାଣି ପାରିଲା ନାହିଁ । କାରଣ ତାର ଆଉ କିଛି ମାନେ ନ ଥିଲା । ସେ ହୋ, ହୋ ହୋଇ ହସି ଉଠିଲେ । ତାର ହସ ପଥର ଖଣ୍ଡମାନଙ୍କରେ ବାଜି ପ୍ରତିଧ୍ୱନିତ ହେବାକୁ ଲାଗିଲା । ସେ ପୁନର୍ବାର ଭୁଲାଇବାକୁ ଲାଗିଲା ।

ନିଦ ଭାଙ୍ଗିଲା ବେଳକୁ ସକାଳ ହୋଇ ଯାଇଛି, ଯେଝା କର୍ତ୍ତବ୍ୟରେ ସେ ଲାଗିଗଲେ ।

— ୯ —

ଏହିପରି କିଛିଦିନ କଟିଗଲା । ସୁର, ନର ସେଠାରେ ଖୁବ୍ ଅଭ୍ୟସ୍ତ ହୋଇ ଗଲେଣି । ଗୃହଅଡ଼ ଦେଖି ଗଲେଣି । ମସ୍ତବଡ଼ ଜାଗା । ବହୁତ ଘର, ପଥର କଟାହୋଇ ହୋଇଛି । ସେ ସ୍ଥାନର ଦୁଆର ମୁହଁ ରହିଛି ସସ୍ତା ପାଖରେ । ପଛରେ ଗୋଟିଏ ଜଙ୍ଗଲ ପାଖରେ ଅଗ୍ଣାଅଗ୍ଣ ଜନସ୍ତ । ତା ଭିତରେ କେହି ଲୁଚିଲେ ଖୋଜି ପାଇବା ଅସମ୍ଭବ । ଶତ୍ରୁ ବାହାର ବାଟେ ଆସିଲେ ଜଙ୍ଗଲ ବାଟେ ପଳାଇ ଯାଇ ପାରିବ । ସେଇଠି ସୁଡ଼ଙ୍ଗ ଅଛି, ଷ୍ଟେସନ ପାଖରେ ଗୋଟିଏ ଘରକୁ । ସେଇଠୁ ଷ୍ଟେସନଟା ଖୁବ୍ ନିକଟ । ଭିତରେ ଖୁବ୍ ଚଲାଖି କାମ ହୋଉଛି । ଠାଏ ଠାଏ ପର୍ବତ ପଛକୁ ପଛ କଟା ହୋଇଛି । ଶତ୍ରୁ ପଛରୁ ଆସୁଥିଲେ, ସେଇ କଟା ପଥର ତଳେ ଲୁଚିଗଲେ ଶତ୍ରୁ ଜାଣି ପାରିବ ନାହିଁ । ଜମିଦାର ବଡ଼ ଚାଲାକ । ପଳାଇ ଯିବାକୁ ମଧ୍ୟ ବହୁତ ବାଟ ରଖିଛି, ବହୁତ ସୁବିଧା ।

ସୁର ନରଙ୍କର ସେଠାରେ ଥିବା ସ୍ତ୍ରୀ, ପୁରୁଷଙ୍କ ସଙ୍ଗରେ ଉତ୍ତମ ରୂପେ ପରିଚୟ ହୋଇ ଗଲାଣି । ସମସ୍ତେ ଦୁଇ ବନ୍ଧୁଙ୍କୁ ଖୁବ୍ ଭଲ ପାଆନ୍ତି । ଏମାନଙ୍କ କାର୍ଯ୍ୟରେ ସମସ୍ତେ ଖୁସି ।

ମ୍ୟାନେଜର ମନ ଲୁଣ୍ଠେ ମୋଟ । ସେ ସବୁବେଳେ ଦୁଇ ବନ୍ଧୁଙ୍କର ଖୁବ୍ ପ୍ରଶଂସା କରନ୍ତି । ଜମିଦାର ମଧ୍ୟ ସେ ପର୍ଯ୍ୟନ୍ତ ତାହାଙ୍କୁ ଚିହ୍ନିପାରି ନାହାନ୍ତି । ତଥାପି ତା ମନରେ ସନ୍ଦେହର ଛାୟା ଅଙ୍କି ହୋଇ ରହିଛି ।

ସେ ଭାବୁଛି, "ବାପା ମା ମୃତ, ଭଉଣୀ ହୃତ, ଜୀବନ ଜବ କଣ ଏତା ସହି ପାରିବେ ? ସେ ନିଶ୍ଚୟ ଆସୁଥିବେ, ଖୋଜୁଥିବେ ବହୁତ ନିଶ୍ଚୟ । ମୁଁ ଶୁଣିଥିଲି ଆମ ଗ୍ରାମକୁ ଯାଇଥିଲେ । ଆମ ଘରେ ପଶିଥିଲେ । କିଛି ପାଇଲେ ନାହିଁ । ପଳାଇ ଗଲେ । ତେବେ ଗଲେ କୁଆଡେ ? କଟକରେ କଣ ସ୍ଥିର ହୋଇ ବସିଛନ୍ତି ? ଅଚ୍ଛା, ସେ ଯଦି କିଛି ଜାଣିପାରି ଏଠାକୁ ଆସିଥିବେ, ତେବେ ପାଇବେ କିପରି ? "ପୁଣି ମନ ବଦଳି ଯାଏ ।" ଅସମ୍ଭବ, ଏପରି ସ୍ଥାନର ସନ୍ଧାନ ନେବା କଣ ସହଜ ହୋଇଛି । ଭାରତ ବିଖ୍ୟାତ ଡିଟେକ୍ଟିଭ ଇନ୍ସପେକ୍ଟର ଅଶୋକବାବୁ ଏହାକୁ ଖୋଜି ପାଇ ନାହାନ୍ତି । ସେ ବା ପାଇବେ କିପରି ? ପୁଣି ମନରେ ଆଘାତ ଲାଗେ, ଅଶୋକବାବୁ ଜୀବନର ଖୁବ୍ ସାଙ୍ଗ । ସେ ଯଦି ଆସି ଅଶୋକ ବାବୁଙ୍କୁ ସାହାଯ୍ୟ ମାଗିଥାଏ, ଅଶୋକବାବୁ ତ ସହି ପାରିବେ ନାହିଁ । ଏଣେ ପୁଣି ତାଙ୍କ କନ୍ୟାର ଅନ୍ତର୍ଦ୍ଧାନ । ସମସ୍ତେ ମିଶି ଯେବେ ବିକ୍ରମ ଛବରେ ଆସନ୍ତି, ତେବେ ତ ସର୍ବନାଶ । ମୁଁ କଣ କଲି ? କାହିଁକି ଏସବୁ କଲି ? ଜୀବନରେ ଗୋଟାଏ ବଡ଼ ଭୁଲ କରିଛି । ନା ସମସ୍ତଙ୍କୁ ଛାଡ଼ି ଦେବି । ଜୀବନ ଏବଂ ଅଶୋକ-ବାବୁଙ୍କଠାରୁ କ୍ଷମା ମାଗିବି । ରବି ଏବଂ ଆଶାକୁ ମୋ ପୁଅ ଝିଅ କରି ରଖିବି । ମୋର କେହି ନାହିଁ, ମତେ ସେମାନେ କ୍ଷମା ଦେବେ ତ ? ନ ଦେଲେ ମଧ୍ୟ ମୁଁ ତାଙ୍କୁ କ୍ଷମା ମାଗିବି । କ୍ଷମା କ-

ଦେହରେ ମରିବ । ବେଶ୍ ଉତ୍ତମ, ସେହି ହେବ ମୋର ଉପଯୁକ୍ତ ଦଣ୍ଡ । ଓଃ । ବଡ଼ ବ୍ୟସ୍ତ, ହଠାତ୍ ମନ ବଦଳିଯାଏ । କୁହୁକର ମାୟା ଲାଗି ଆସେ । ପୁଣି ଭାବି ଚାଲେ "ଅସମ୍ଭବ । ଜୀବନ ଅପେକ୍ଷାକରାରୁ କେହି ଏ ସ୍ଥାନର ସନ୍ଧାନ ପାଇ ପାରିବେ ନାହିଁ, ଶତ ଚେଷ୍ଟା କରି ମଧ୍ୟ । ମୋର ଏତେ ସୁରକ୍ଷିତ ସୈନ୍ୟ, ବନ୍ଧନ, ବାସ୍ପ ଏ ସବୁ ବୃଥା ହୋଇଯିବ । ଶତ୍ରୁ ଆସିଲେ ଉପଯୁକ୍ତ ଶିକ୍ଷା ଦେଇ ସେମାନଙ୍କୁ ଫେରାଇ ଦେବ । ଧନେ ଯେପରି ଏଠାରେ ମୁହଁ ଦେଖାଇବାକୁ ଆସିବେ ନାହିଁ । ତିନୋଟି ହତଭାଗା ବାଳିକା ସେମାନେ ମୋର ଦଣ୍ଡ ବରିବେ ।"

"ଅମାବାସ୍ୟା ଦିନଠାରୁ ସେମାନଙ୍କୁ ନିସ୍ତବ୍ଧ ଦାସୀ କରି ରଖିବ । ମୋର ପ୍ରତିଜ୍ଞା ପୂର୍ଣ୍ଣ ହେବ । ଏ ଦୁର୍ଗ ଅଜେୟ । ଅସମ୍ଭବ ଜୀବନ, ଅସମ୍ଭବ ଅପେକ୍ଷାକରାରୁ, ବୃଥାରେ ଏ ବଦମାସ୍ ପଛରେ ଲାଗିଛନ୍ତି, ପାରିବେ ନାହିଁ ।" ମୁଣ୍ଡ ଗୋଲମାଳ ହୋଇ ଉଠେ । ସ୍ୱପ୍ନରେ ଉଠି ଘଣ୍ଟା ବଜାଏ । ପ୍ରହରୀ ସଲାମ ଦିଏ । ହୁକୁମ ହୁଏ ମଦ ଏବଂ ନାଚ ପାଇଁ । ସଙ୍ଗେ ସଙ୍ଗେ ସବୁ ଚାଲିଆସେ । ମଦପିଆ ଚାଲେ ଏବଂ ଗୀତ ବାଦ୍ୟରେ ଘରଟି ପୂରି ଉଠେ । ଜମିଦାର ସ୍ୱର୍ଗପୁରି, ଇନ୍ଦ୍ର ଭୁବନ, ଅପ୍ସରା ନୃତ୍ୟ ଦେଖୁ ଦେଖୁ ମଦ ନିଶାରେ ପଲଙ୍କ ଉପରେ ଢଳିପଡ଼େ । ସବୁ ବନ୍ଦ ହୋଇ ଯାଏ ।

ଠିକ୍ ସେତିକି ବେଳେ ସୁର ରୁମଟିରେ ଏକୁଟିଆ ବସି ଭାବି ଚାଲିଛି ପୁରୁଣା କଥା ଗୁଡ଼ିକ । ଭାବି ଭାବି ତା ମନରେ ଭାରି ଘୃଣା ଲାଗିଲା । ସେ ଉଠି ଯାଇ ଅଣ୍ଡା ଫାଙ୍କି ଗ୍ଲାସେ ପିଇ ସିଗାରେଟ୍ ଗଣ୍ଡେ ଲଗାଇଲା । ଟେବୁଲ ଉପରେ [illegible] । ହୋଇ ଦେଖି [illegible] କୁ ଚାଲିଆସି ଅନ୍ଧକାର । ଦୀର୍ଘ [illegible] ହାତର

ସ୍ପର୍ଶରେ ଚମକି ପଡ଼ିଲା । ପଛକୁ ଚାହିଁ ଦେଖିଲା, ସୁମନ୍ତ ଠିଆ ହୋଇ ମୃଦୁ ମୃଦୁ ହସୁଛି । ହସର ଧ୍ୱନୀରେ ପଚେଇ ଯାଇ କହିଲା, "ତୁମେ କିଅଟେ ସୁମନ୍ତ ଦେବା ?"

ସୁମନ୍ତ ବିନା ନିମନ୍ତ୍ରଣରେ ଗୋଟିଏ ଚଉକି ଉପରେ ବସି ଯାଇ କହିଲା, "ବସନ୍ତୁ ନା, କହୁଛି ।"

ସୁର ଦେଖିଲା ନ ବସିଲେ ନ ଚଳେ । ବାଧ୍ୟ ହୋଇ ଟିକିଏ ବୁଝେଇ ହୋଇ ବସି କହିଲା, "ଏଥରକ ମୋ ପ୍ରଶ୍ନର ଉତ୍ତର ଦେଲେ ମୁଁ ଖୁବ୍ ଖୁସି ହୁଅନ୍ତି ।"

ସୁମନ୍ତ ହସି ହସି କହିଲା, "ଦୟା କରି ଆଉ ଥରେ ପ୍ରଶ୍ନଟା ପଚାରନ୍ତୁ ।"

ସୁର କହିଲା, "କେଉଁଠି ବୁଝିପାରୁ ନାହାନ୍ତି ? ଏଠାକୁ ଆସିବାର ଅଭିପ୍ରାୟ କଣ ?"

"ଓ ଏକଥା ? ଜାଣିଛି, ଆସିଲେ କଣ କିଛି ଦୋଷ ଅଛି ? ଏଇ ଘରେ ବସି ବସି ଭଲ ଲାଗିଲା ନାହିଁ । ଚାଲି ଆସିଲି ଦି ଚାରି ପଦ କଥାବାର୍ତ୍ତା ହେବାକୁ । ଆପଣଙ୍କୁ ଯଦି ଖରାପ ଲାଗୁଛି, ନେବେ କହନ୍ତୁ । ମୁଁ ଚାଲିଯିବି ।" ସୁମନ୍ତ ଏତକ କହି ସୁର ଆଡ଼କୁ ଚାହିଁ ରହିଲା ।

ସୁର ଦେଖିଲା ଯେ ଚିଡ଼ି ଦେବାଟା ଭଲ ହେବ ନାହିଁ । ବରଂ କୌଶଳ କରି, ଏମାନଙ୍କ ପାଖରୁ କିଛି କଥା ଜାଣିବା ଦରକାର । ସେ ହସି ହସି କହିଲା, "ନା, ନା ଆସିଛ ଦୁଇ ଚାରିପଦ କଥାବାର୍ତ୍ତା ହୋଇ ଯିବ ।" ଅଚ୍ଛା ମୁଁ କବାଟଟା ବନ୍ଦ କରି ଦେଇ ଆସେ । ଯଦି କେହି କିଛି ଶୁଣେ କି ଦେଖେ·····

ସୁମତି କଥାଟାକୁ ଘୋଡ଼ାଇ ନେଇ କହିଲା, "କେହି କିଛି କରିବେ ନାହିଁ । ହଜୁ ଯଦି କହୁଚ କବାଟ ବନ୍ଦ କରି ଦେଇପାର ମୋର କିଛି ଆପତ୍ତି ନାହିଁ ।"

ସୁର କବାଟ ବନ୍ଦ କରି ଦେଇ ସୁମତି ପାଖକୁ ଚାଲି ଆସିଲା । ତା ଆଖିରେ ସୁମତିର ରୂପ ସୁନ୍ଦର ଏବଂ ମନ ମୁଗ୍ଧକର ଦେଖାଗଲା । ସେ ସୁମତିର ସୁକୋମଳ କ୍ଷୁଦ୍ର ହସ୍ତଟିକୁ ଉଠାଇ ନେଇ କହିଲା, ସୁମତି ଦେବୀ ସତେ କଣ, ତୁମେ ମୋତେ ଭଲ ପାଅ ?

ସୁମତି ତାର ପାପ ଲିପ୍ସାକୁ ଦମନ ନ କରି ମାଦକସ୍ୱରର ସ୍ରୋତ ଉପରେ ଅଜଣା ପଥ କହିଲା, "ତୁମେ ସିନା ବୁଝିଲ ହୁଏଇ ଚାଲିଛ । କିନ୍ତୁ ପ୍ରଥମ ଦେଖାରେ ମୁଁ ତୁମର ହୋଇ ପାରିଛି ।

ସୁର ସୁମତିକୁ ଅତୁଳ ନିକଟକୁ ଭିଡ଼ି ଆଣି ତାର ସୁକୋମଳ ଗୋଲାପି ଅଧରରେ ଗୋଟିଏ ସରୁ ଚୁମ୍ବନ ଆଙ୍କି ଦେଇ କହିଲା, "ସତେ ସୁମତି ଦେବୀ ତୁମେ ମୋତେ ଏତେ ଭଲ ପାଅ ? କିନ୍ତୁ ମୁଁ ସନ୍ଦେହ ଆଖିରେ ତୁମକୁ ଦେଖୁଥିଲି । କ୍ଷମା ଦିଅ ।"

ସୁମତି ଆଖି ବୁଜି ଦେଇ କହିଲା, "ତୁମକୁ କ୍ଷମା, ପୁଣି ମୁଁ ଦେବି ତା ହୋଇ ନ ପାରେ । ତୁମେ ମତେ କ୍ଷମା ଦିଅ ।"

ସୁର ସୁମତିକୁ ଛାଡ଼ିଦେଇ ଖଟ ଉପରେ ବସିବାକୁ କହିଲା । ସୁମତି ବସିବା ପରେ ସୁର କହିଲା, "ତୁମର ଘରଆଡ଼େ ଅବାଧ ଗତି ନା ? ତୁମକୁ କେହି କିଛି କୁହନ୍ତି ନି । ତୁମକୁ ସନ୍ଦେହ କରନ୍ତି ନାହିଁକି ?

ସୁମତି ହସି ହସି କହିଲା, "କେବଳ ବଜାର ନେଇଗୁଁ ।"

ସୁର ପଚାରିଲା, "ଅଚ୍ଛା ସୁମତି ଦେବୀ, ତୁମେ ଏଠାକୁ ନିଜ ଇଚ୍ଛାରେ ଆସିଛ କି ତୁମକୁ ଯବରଦସ୍ତ ଅଣା ଯାଇଛି ?

ସୁମନ୍ତ କଥାଟାକୁ ଏଡ଼ାଇଦେଇ କହିଲା, "ଅଚ୍ଛା ସୁର ବାବୁ ଆପଣଙ୍କ ଘରେ କିଏ ଅଛନ୍ତି ?"

ସୁର ଦେଖିଲା ସୁମନ୍ତ କଥା ଗୁଡ଼ାକ ଅନ୍ୟ ଆଡ଼େ ନେଉଛି । ସେ ଯଦି ପୁନର୍ବାର ସେ କଥା ପଚାରେ, ତେବେ ସେ ସନ୍ଦେହ କରିବ । ଏଣୁ ସେ ହସି ହସି କହିଲା, "ନାହିଁକି ମୋର ତ ସମସ୍ତେ ଅଛନ୍ତି । ବାପା, ମା, ଭାଇ, ଭଉଣୀ ସମସ୍ତେ ତ ଅଛନ୍ତି । ମୁଁ ଏ କଥାତ ଆଗରୁ କହି ଦେଇଛି ।"

"ତେବେ ତୁମେ ଏଠାକୁ ଆସିଲ କାହିଁକି ?" ସୁମନ୍ତ ପଚାରିଲା ।

ସୁର କହିଲା, "ଆଉ ବା କଣ କରନ୍ତି । ପିତାଙ୍କର ଇଚ୍ଛା, କୂପ-ମଣ୍ଡୁକ ପରି ରହିବାକୁ । କିନ୍ତୁ ମୋର ତ ତା ଇଚ୍ଛା ନୁହେଁ ।"

କଟାକ୍ଷ ହାଣି ସୁମନ୍ତ କହିଲା, "ତୁମର ଇଚ୍ଛା କଣ ?"

ସୁର ହସି ହସି କହିଲା, "ମୋ ଇଚ୍ଛା ତୁମେ ଯେପରି ରହୁଛ ସେହିପରି ରହିବାକୁ । ଅଚ୍ଛା, ସୁମନ୍ତ ଦେବୀ ତୁମେ କଣ ଏ ଜୀବନ-ଟାକୁ ସୁଖ ପାଅ ?"

ସୁମନ୍ତ ହସି ହସି କହିଲା, "ସୁଖ ନପାଇ ବା କାହିଁକି ? ଅସୁବିଧା ତ କିଛି ନାହିଁ । ଖାଇବା ପିଇବା, ନାଚିବା କୁଦିବା, ମଜା ମଜଲିସ୍ କରିବା ସବୁ ତ ହୋଇ ପାରୁଛି । ସୁଖ ନ ଲାଗିବ କାହିଁକି ? ଅଚ୍ଛା ତୁମକୁ ?"

ସୁର କହିଲା, "ସେଇଥିପାଇଁ ତ ଆସିଛି ତୁମମାନଙ୍କ ସଙ୍ଗରେ ହସି ଖେଳି ମୋ ଜୀବନଟାକୁ କଟାଇ ଦେବାକୁ । ତେବେ ଏଥିରେ ସନ୍ଦେହର କାରଣ କଣ ?"

ସୁମନ୍ତ ଉଠି କହିଲା, ନା ସନ୍ଦେହ କିଛି ନାହିଁ ସମସ୍ତ ହୋଇଗଲାଣି, ଅସୁଚ । "ନମସ୍କାର ।"

ସୁର କହିଲା, "ଆଉ ଟିକିଏ ବସନ୍ତୁ ନା ।"

ସୁମନ୍ତ ହସି ହସି କହିଲା, "ପରେ ଆସିବି, ବହୁତ କାମ ପଡ଼ିଛି, ମତେ ଘର ସବୁ ସାରିବାକୁ ହେବ, ନମସ୍କାର ।"

"ନମସ୍କାର ।" ସୁର ଜଣାଇଲା

ସୁମନ୍ତ ଚାଲିଗଲା ପରେ ହୋ ହୋ ହୋଇ ହସି ଉଠିଲା । ମନକୁ ମନ କହିଲା "ନମସ୍କାର ।" ଜୀବନକୁ ତାହାହେଲେ କେହି ଚିହ୍ନି ନାହାନ୍ତି । ଅନ୍ଧ ଦସ୍ୟୁ ଗୁଣ୍ଡାଏ, ଚିହ୍ନିବେ ଜୀବନକୁ । ହା, ହ, ହା,...

—୧୦—

ଏହାପରେ ବହୁତ ଦିନ ଚାଲିଗଲା । ଏତେଦିନ ସେଠାରେ ରହିବାକୁ ତାହାରିକୁ ଭଲ ଲାଗିଲା ନାହିଁ । ଅନ୍ଧକାର ଗୁମ୍ଫା ମଧ୍ୟରେ ବହୁତ ଦିନ ରହି ରହି ବ୍ୟସ୍ତ ହୋଇ ପଡ଼ିଲେଣି । ସବୁବେଳେ କେବଳ ତାଙ୍କର ସେହି ଏକ ଚିନ୍ତା, କିପରି ବାହାରକୁ ଯିବେ । ଜମିଦାର ତାଙ୍କ ଉପରେ ସନ୍ଦେହ କରି ବାହାରକୁ ଛାଡୁନାହିଁ । ସୁବିଧା ମଧ୍ୟ ଘଟୁ ନାହିଁ ବାହାରକୁ ଯିବାକୁ । ବାହାରକୁ ଗଲେ ସିନା ଅଶୋକ ବାବୁଙ୍କ ସଙ୍ଗେ ଦେଖା କରିବେ । ତାଙ୍କ ସବୁକଥା କହିବେ ଏବଂ ତାଙ୍କଠାରୁ ପୁଲିସ ଆଣି ଜମିଦାରକୁ ଧରି ପକାଇବେ । କିନ୍ତୁ ବାହାରକୁ ତ ଯିବାକୁ ସୁଯୋଗ ମିଳୁ ନାହିଁ । ଏସବୁ କରିବେ କିପରି ?

ସେଦିନ ରବିବାର । କବର ଘରେ ଛୋଟିଆ ଆସନରେ ବସିଛନ୍ତି ଅଶ୍ୱୀନ । ସମସ୍ତଙ୍କ ମୁହଁରେ ଚିନ୍ତାର ଭାବ ଫୁଟି ଉଠିଛି

ଯେପରି କିଛି ଗୋଟିଏ ବଡ଼ ଗୁରୁତର କାମ କରିବାକୁ ଯାଉଛନ୍ତି । ବାହାରକୁ ଯିବାପାଇଁ ନବ ନବ ପ୍ରକାର ଚିନ୍ତା କେନ୍ଦ୍ରିତ । କିନ୍ତୁ କୌଣସିଟା କୃତକାର୍ଯ୍ୟ ହୋଇପାରୁ ନାହିଁ । ସିଗାରେଟ୍ ଧୂଆଁରେ ଘରଟି ଅନ୍ଧାର, ସମସ୍ତେ ଧୂଆଁ ଗୁଡ଼ ଭିତରେ ବ୍ୟସ୍ତ ।

ହଠାତ୍ ନର ଚିତ୍କାର କରି ଉଠିଲା, "ପାଇଛି, ପାଇଛି ଏଇବାର ପାଇଛି ।" ରବି ଏବଂ ସୁର ଦୁହେଁଯାକ ଏକ ସାଙ୍ଗରେ କହି ଉଠିଲେ, 'କଣ ପାଇଛରେ !' ନର ସିଗାରେଟ ଧୂଆଁ ଗୁଡ଼ୁ ଗୁଡ଼ୁ କହିଲା, 'ଯଦି ଆମେ ମ୍ୟାନେଜରଙ୍କୁ ହାତ କରି ହୋଟେଲକୁ ଯାଇ ପାରିବା ତେବେ ସେଠାରୁ ଯିବାକୁ କିଛି ବିପଦ ନାହିଁ କି ବାଧା ନାହିଁ । କିନ୍ତୁ ମ୍ୟାନେଜରଙ୍କୁ ହାତ କରିବ କିଏ ?"

ତନିବନ୍ଧୁଙ୍କର ପୁଣି ଭାବନାରେ ପଡ଼ିଲେ । ବହୁତ ଯୁକ୍ତି ତର୍କ ପ୍ରାୟ ଦୁଇଘଣ୍ଟା ହେବା ପରେ ଠିକଣା କଲେ ନର ତାର ଉପଯୁକ୍ତ ହେବ । "କିନ୍ତୁ କିପରି ?" ନର ପଚାରିଲେ ।

ସୁର କହିଲା, ମ୍ୟାନେଜର ଉପରେ ଖୁବ୍ ଭଲ ପାଏ । ତୁ ଯଦି ତାକୁ ଗୋଟେ ଏ କଥା କହୁ ତା ହେଲେ ବୋଧେ ସେ ତୋ କଥା ଭାଙ୍ଗିବ ନାହିଁ ।"

ରବି ପଚାରିଲା, "କେଉଁ କଥା ।"

ସୁର ଦରପୋଡ଼ା ସିଗାରେଟଟାରେ ନିଆଁ ଲଗାଉ ଲଗାଉ କହିଲା, 'କେବଳ କହିବ, ଆମେ ଏତେ ମାସ ଭଗ୍ନା ଭିତରେ ରହିଲୁଣି, ଥିକଏ ବାହାରଟା ଦେଖନ୍ତୁ ଏବଂ ଯଦି ଜମିଦାରଙ୍କ ମନ ଲାଗି କିଛି ଜିନିଷ ପାଆନ୍ତୁ ତେବେ ଆଣି ତାଙ୍କୁ ଭେଟି ଦିଅନ୍ତୁ । ତାପରେ ବାହାରକୁ ତନି ଜଣଯାକ ଗଲେ, ଦରକାର ବୁଲିବା ନାଁରେ ମୁଁ ଯିବି ଅଶୋକ ବାବୁଙ୍କ ଘରକୁ । ସେଠାରେ ତାଙ୍କୁ

ସବୁକଥା କହିବ ଏବଂ ସାହାଯ୍ୟ ମାଗିବ । ସେ ତ ମୋର କଲେଜ ବେଳର ସାଙ୍ଗ । ସେ ବୋଧହୁଏ ମୋ କଥା ଭାଙ୍ଗିବେ ନାହିଁ । ଏ ବିପଦରେ ନିଶ୍ଚୟ ଆମକୁ ସାହାଯ୍ୟ ଦେବେ ।"

ସମସ୍ତଙ୍କ ମନକୁ ଏ କଥାଟା ବେଶ୍ ପାଇଲା । ସମସ୍ତେ ହେଉ ବୋଲି କହିଲେ । ତାପରେ ସଭା ଭଙ୍ଗ ହେଲା । ନିଜ ନିଜ ରୁମ୍‌କୁ ଚାଲିଗଲେ ।

ସେଦିନ ରାତି, ମିଟିଙ୍ଗ ସରିଲା । ସମସ୍ତେ ଯେ ଯାହା ରୁମ୍‌କୁ ଚାଲିଗଲେ । ଏକା ନର ଥାଏ ଏବଂ ମ୍ୟାନେଜର ସେ ରୁମ୍‌ରୁ ଗଲାବେଳକୁ ପଛଆଡୁ ଡାକିଲା । ମ୍ୟାନେଜର ପଛକୁ ବୁଲି କହିଲା, "କଏ ନର, କଣ ?"

ଗୋଟିଏ 'କଥା', ନର କହିଲା ।

ମ୍ୟାନେଜର ପଚାରିଲା କଣ ?

ନର କହିଲା, ରାଜି ହେଲେ ସିନା କହିବ ।

ମ୍ୟାନେଜର ହସି ହସି ପଚାରିଲା, "କଥା କଣ କହ, ତୋ କଥା କେବେ ଭାଙ୍ଗି ଦେଉଛି ।"

ନର କରୁଣ ସ୍ୱରରେ କହିଲା, "ଆମେ ବହୁତ ଦିନ ହେଲା ବାହାରର ଦୃଶ୍ୟ ଦେଖି ନାହୁଁ । ସୂର୍ଯ୍ୟ କିରଣ ପାଇ ନାହୁଁ । ବାହାରର ସୌନ୍ଦର୍ଯ୍ୟରୁ ଆମେ ବହୁତ ଦୂରରେ ଅଛୁ । ଆପଣ ଦୟା କରନ୍ତେ, ତେବେ ଆମେ ଟିକିଏ ବାହାର ବୁଲିବାକୁ ଯାଆନ୍ତୁ । ଏ ଓଡ଼ା ଯାଇ ଆଉ ଓଡ଼ାକୁ ଫେରି ଆସନ୍ତୁ ।"

ମ୍ୟାନେଜର ମନେ ମନେ କିଛି ସମୟ ଭାବିଲା । କଣ ଭାବିଲା କେଜାଣି କହିଲା "ଅଚ୍ଛା, ମୁଁ ଯାଉଛି ବର୍ତ୍ତମାନ ଜମିଦାରଙ୍କଠାରୁ

ଅନୁମତି ଆଣିବାକୁ ହିଁ । ତୁମେମାନେ ଠିକ୍ ହୁଅ ।” ମ୍ୟାନେଜର ଏତକ କହୁ ଅଦୃଶ୍ୟ ହୋଇଗଲେ ।

ଜର ଅସ୍ତି ସୁର ଏବଂ ରବିଙ୍କୁ ଏକଥା କହିଲେ । ତିନିହେଁ ଲୁଗା ପିନ୍ଧି ଠିକ୍ ହେଲେ । ତଥାପି ଏ ସମସ୍ତଙ୍କ ମନରେ ଭୟ ହେଉଥାଏ । ହାଲେ ଜମିଦାର ମନା କରିବେ, ଭଣ କରିବେ । ଅଚ୍ଛା ଦେଖାଯାଉ, ଜମିଦାର ମ୍ୟାନେଜରଙ୍କୁ ଖୁବ୍ ଭଲ ପାଏ, ସେ ନିଶ୍ଚୟ ହଁ କରିବ । ଏଇପରି ଭାବୁଛନ୍ତି, ଏହି ସମୟରେ ମ୍ୟାନେଜର ଅସି ହସ ହସ ମୁହଁରେ ପହଞ୍ଚି ଗଲେ । ତାଙ୍କର ହସ ମୁହଁ ଦେଖି ବନ୍ଧୁ ତିନିହେଁ ଜାଣି ପାରିଲେ ଯେ, ତାଙ୍କର ଆଶା ପୂର୍ଣ୍ଣ ହୋଇଛି ।

ମ୍ୟାନେଜର କହିଲେ, “ତେବେ ଚାଲ ବାହାର ଅସ ।”

ତିନିବନ୍ଧୁ ମ୍ୟାନେଜର ସଙ୍ଗେ ବାହାରି ଅସିଲେ ।

ବହୁଦିନ ପରେ ମୁକ୍ତାକାଶ ତଳେ ତିନିବନ୍ଧୁ ଅସି ପହଞ୍ଚିଲେ । ସେମାନଙ୍କର ଅନନ୍ଦ କହିଲେ ନ ସରେ । ବହୁତ ଦିନ ପରେ ପୁଣି ସହରର ମୁକ୍ତବାୟୁ ତଳେ ପହଞ୍ଚିଛନ୍ତି । ତିନି ବନ୍ଧୁଙ୍କ ମୁହଁରେ ହସ ଫୁଟି ଉଠିଲା । ତିନିବନ୍ଧୁ ଶୀଘ୍ର ଶୀଘ୍ର ହୋଟେଲ ଆଡ଼କୁ ଅଗ୍ରସର ହେଲେ । ସେଦିନ ସଭିଏ ସେଠାରେ ରହିଲେ ।

ତା ପରଦିନ ଭୋରରୁ ଉଠି ନିତ୍ୟକର୍ମ ଶେଷ କରି ତିନିବନ୍ଧୁ ବାହାରି ପଡ଼ିଲେ ବୁଲିବାକୁ । ହୋଟେଲର ବହୁତ ଦୂରରେ ଗୋଟିଏ ଛକ ଉପରେ ରବି କହିଲା, “ଦେଖନ୍ତୁ ଜୀବନବାବୁ । ବର୍ତ୍ତମାନ ଆପଣ ଅଶୋକ ବାବୁଙ୍କ ଘରକୁ ଯାଆନ୍ତୁ । ଆମେ ବଜାର ଆଡ଼େ ଯାଉଛୁ । ଯେ ଆଗେ ଆସିବ, ସେ ଅନ୍ୟକୁ ଏହିଠାରେ

ଅପେକ୍ଷା କରିବ । ତାପରେ ତିନିହେଁ ମିଶି ହୋଟେଲକୁ ଯିବା । ନଇଲେ ମ୍ୟାନେଜରର ସନ୍ଦେହ କରିପାରେ । ହଁ, ଆଉ ଗୋଟେ କଥା । ମ୍ୟାନେଜର ସନ୍ଦେହ କରି ଆମ ପଛରେ ଲୋକ ଲଗାଇ ପାରେ, ହୁସିଆର ହୋଇଥିବ ।" ଜୀବନ ଏହା କହି, ରବି ଏବଂ ନବଠାରୁ ବିଦାୟ ନେଇ ବାହାରିଲା ଅଶୋକ ବାବୁଙ୍କ ଘରକୁ ।

—୧୧—

ଗଙ୍ଗା ନଦୀର ପୂର୍ବ ପାଖରେ ଥିବା ନାଲି ରଙ୍ଗର ଏକ ସୁବିଶାଳ ପ୍ରାସାଦ ପଥିକମାନଙ୍କର ଆଖିରେ ପଡେ । ଏହି ପ୍ରାସାଦଟିର ମାଲିକ, ଭାରତ ପ୍ରସିଦ୍ଧ ଡିଟେକ୍ଟିଭ ଇନ୍ସପେକ୍ଟର ଅଶୋକବାବୁ । ପ୍ରାସାଦର ସମ୍ମୁଖରେ ସୁନ୍ଦର ବଗିଚା । ନାନା ରଙ୍ଗର ଫୁଲଗଛ-ମାନଙ୍କଦ୍ୱାରା ବଗିଚାଟିର ଶୋଭା ବର୍ଦ୍ଧିତ ହୋଇଛି । ସେ ଶୋଭା ଦେଖିଲେ କବିର କଳ୍ପନା ସୃଷ୍ଟି ହୁଏ । ପଥିକର ନୟନ ଝଲସି ଯାଏ । ସେ ଭାବ ଗୁଡିକ ବହୁତ କଥା । ଲକ୍ଷି ଥରେ ନୟନ ଆଗେ କେତେ ରଙ୍ଗିନ ଛବି । ଦଣ୍ଡେ ଠିଆ ହୋଇଯାଏ, ପଲକ ପଡେନା । ଝେଣ୍ଟମାନଙ୍କର ହୋ ହା ଶବ୍ଦରେ ତାର ଭାବନା ଭାଙ୍ଗିଯାଏ । ସେ ତାର ଗନ୍ତବ୍ୟ ପଥରେ ଗତି କରି କରୁ ପୁନର୍ବାର ବଗିଚାଟିକୁ ଅନାଏଁ ।

ବଗିଚାଟି ପ୍ରାସାଦର ସୌନ୍ଦର୍ଯ୍ୟ ବର୍ଦ୍ଧିତ । ବଗିଚାର ଗୋଟିଏ କଡ଼ରେ ଦୁଇଟି ପଥର ନିର୍ମିତ ଚଉକି । ଚଉକି ଦୁଇଟିର ମଧ୍ୟଭାଗରେ ଗୋଟିଏ ପଥର ଟେବୁଲ । ଟେବୁଲ ଉପରେ ଗୋଟିଏ ଅମୃତବଜାର ପତ୍ରିକା ଥୁଆ ହୋଇଛି । ଗୋଟିଏ ଚଉକିରେ ଅଶୋକବାବୁ ଏବଂ ଅନ୍ୟ ଗୋଟିଏ ଚଉକିରେ ତାଙ୍କର ସ୍ତ୍ରୀ ଅଳକା ଦେବୀ ବସିନା । ଅଶୋକବାବୁ ଗମ୍ଭୀର ଚିନ୍ତାମଗ୍ନ । ଅଳକା ଦେବୀଙ୍କର

ନୟନଯୁଗଳ ଅଶ୍ରୁ ଜଳରେ ଭସି । ଭାବି ସୁଲଚନ୍ଦ୍ର ବହୁତ କଥା । କନ୍ୟା ଇତା କଥା ମଧ୍ୟ । ସେ୍ୱର କନ୍ୟାକୁ ବହୁତ ଧନ ଦେଇ ହରାଇ ବସିଛନ୍ତି । ବହୁତ ଧନ ଦେଲେ ତାକୁ ଦେଖି ନାହାନ୍ତି । କନ୍ୟା ତାଙ୍କୁ ନ ଦେଖି କଣ ହେଉଥିବ, ତାର ଅବସ୍ଥା କଣ ହେଉଥିବ, ସେ କଣ ଅଉ ବଞ୍ଚିବ । ସେ କଣ ତାକୁ ଅଉ ଫେର ପାଇବେ । ଏତେ ବଡ ଡିଟେକ୍ଟିଭ୍ ଯାର ଭାରତରେ ନାଁ ପଡୁଛି, କିନ୍ତୁ ତାଙ୍କ କବଳରୁ ନିଜ କନ୍ୟାକୁ ରକ୍ଷା କରିବାର କ୍ଷମତା ନାହିଁ । ସ୍ତ୍ରୀ ମଧ୍ୟରେ ମଧ୍ୟ କାହାର ବଶ ନାହିଁ । ଅଶୋକ ବାବୁ ମଧ୍ୟ ଧୈର୍ଯ୍ୟ ଧରି ରହିପାରୁ ନାହାନ୍ତି ।

ସ୍ତ୍ରୀର ଲୁହ ପୋଛି ଦେଇ ଦେଇ କହିଲେ, ନା ନା ଅଳକା ତୁମେ ବ୍ୟସ୍ତ ହୁଅନ, ମୁଁ କଣ କରିବି କହିଲ । ସବୁଆଡେ ଲୋକ ପଠାଇଲି, ମୁଁ ନିଜେ ମଧ୍ୟ ବହୁ ଜାଗାରେ ସନ୍ଧାନ ନେଲି, କିନ୍ତୁ କୌଣସି ଠାରେ ପାଇଲି ନାହିଁ । ଭାରତରେ ଏପରି କୌଣସି ସ୍ଥାନ ନାହିଁ, ଯେଉଁଠା କି ମୁଁ ନ ଖୋଜିଛି । କିନ୍ତୁ ମୋର ଆଶା ବୃଥା, ମୁଁ କୌଣସିଠାରେ ପାଇଲି ନାହିଁ ; ତଥାପି ପୁଲିସ ଲଗାଇଛି; ସୁଇଦା ବନ୍ଦୋବସ୍ତ କରିଛି, କେବଳ ଗୋଟିଏ ସ୍ଥାନ ମୋର ସନ୍ଦେହ ହେଉଛି । ଯଦି ସେହି ସ୍ଥାନ ହୋଇଥାଏ ତେବେ ସବୁ ବାହାରିବ, ବ୍ୟସ୍ତ ହୁଅ ନା । ଧୈର୍ଯ୍ୟ ଧର । ଅଉ ସାତଦିନ ଅପେକ୍ଷା କର । ତା ଭିତରେ ଯଦି ତୁମର ହୃଦୟର କନ୍ୟା ଲତାକୁ ଫେରାଇ ନ ଦେଇଛି, ତେବେ ମୁଁ ଚାକିରି ଛାଡ଼ି ଦେବି । ଏଇ ମୋର ପ୍ରତିଜ୍ଞା, କେବଳ ତୁମରି ପାଖରେ ନୁହେଁ, ଜଗତ ପାଖରେ ଏତିକି କହି ଅଶୋକବାବୁ ଅଳକାର କୋମଳ ହାତ ଦୁଇଟିକୁ ଚୁପି ଧରିଲେ ।

ଜୀବନ ଅଶୋକ ବାବୁଙ୍କ ଅଲକ୍ଷରେ ଉପରକୁ ଆସି ନିକଟରେ ଥିବା ଗୋଟିଏ ବଡ଼ ଗଛ ଆଢୁଆଳରେ ବସି ସବୁ ଶୁଣିଥିଲା । ସେ ଭାବିଲା, "ସତେ ଅଶୋକବାବୁ ସେ ସ୍ଥାନର ଅନୁସନ୍ଧାନ ନେଉଛନ୍ତି । ତେବେ ତ ଭଲ । ମୁଁ ତାଙ୍କୁ ସାହାଯ୍ୟ କରିବି । ଚୋରକୁ ଧରାଇ ଦେବି । ବଦମାସ୍ ଜମିଦାର ତୋତେ ପରିତ୍ରାଣ ନାହିଁ । ଏଇଥର ତୋର [illegible]ା ଖେଳା ସବୁ ଶେଷ ହୋଇଯିବ ।"

ଏହି ସମୟରେ ଅଶୋକ ବାବୁଙ୍କର ପାଟି ଶୁଣାଗଲା । ସେ କହୁଛନ୍ତି "ଅଳକା ମୋ ରାଣୀଟି ପରି ଆଉ କାନ୍ଦନା । ଗଲା ସବୁତ୍ ଫେରସେ ଆଣିବ ।" ଅଳକା ଆଖିରୁ ଲୁହ ପୋଛିଦେଇ ଚାଲିଗଲେ ଭିତରକୁ ।

ଅଳକା ଚାଲିଯିବା ପରେ ଜୀବନ ଗଛ ପଛଆଡ଼ୁ ବାହାରି ଆସିଲା ଏବଂ ଅଶୋକ ବାବୁଙ୍କ ପଛଆଡ଼େ ଠିଆ ହୋଇ ଡାକିଲା, "ଅଶୋକ ଭାଇ, ଅଶୋକ ଭାଇ ।"

ଅଶୋକ ବାବୁ କଣ ଭାବୁଥିଲେ, ହଠାତ୍ ପଛକୁ ବୁଲି ଦେଖିଲେ ଜୀବନ ପଛରେ ଠିଆ ହୋଇଛି ।

"କିଏ ଜୀବନ ଏତେ ସକାଳୁ କୁଆଡ଼େ ? ଆ, ଆ ବସିପଡ଼ ।" ପୁନର୍ବାର ପାଟିକରି ଡାକିଲେ, "ଅଳକା ଦୁଇ ଗ୍ଲାସ ସରବତ୍ ଆଣିବ ।"

ତାପରେ ଜୀବନକୁ ପଚାରିଲେ, ଏଣେ କୁଆଡ଼େ ? ବାଟ ଭୁଲିଗଲୁ ପରା । କଥା କଣ । ଏ ଅସମୟରେ [ଯେ ।'

ଜୀବନ ସବୁକଥା ଲୁଚାଇ କହିଲା, 'ହଁ ଭାଇ, ବଉଦିମାନ ଅଳକା ଦେବୀଙ୍କ ସହିତ କଣ କଥାବାର୍ତ୍ତା ଚାଲିଥିଲା କହନ୍ତୁ ।'

ଅଶୋକବାବୁ କହିଲେ, 'ଓଃ, ତା ହେଲେ ତୁ ସବୁ ଶୁଣିଛୁ, ଆଉ କହୁଛ କଣ ।'

ଜୀବନ ଦୀର୍ଘ ନିଶ୍ୱାସ ମାରି କହିଲା, "ହଁ, ସବୁ ଶୁଣିଛି, କିନ୍ତୁ ତାର କିଛି ପ୍ରତିକାର ହେଉଛି ନା ନାହିଁ ?"

ଅଶୋକ ବାବୁଙ୍କ ଅଖି ଲୁହରେ ଭରିଗଲା । ସେ ଭାର ଭାର ସ୍ୱରରେ କହିଲେ, "ବହୁତ ଚେଷ୍ଟା କଲିଣି, କିନ୍ତୁ କିଛି କରିପାରି ନାହିଁ ।'

ଜୀବନ ଟିକିଏ ଭାବି କହିଲା "ଅଚ୍ଛା, ମୁଁ ଯଦି ତାର ଉପାୟ ବତାଇ ଦିଏ ତେବେ ?"

"ବତାଇ ଦେବୁ, ସତରେ ବତାଇ ଦେବୁ ଜୀବନ, ସତ କହୁଛୁ ତୁ । ମୁଁ ତ କିଛି ବୁଝିପାରୁ ନାହିଁ ଜୀବ ଭାଇ, ସତ କହ । କଣ ଉପାୟ ଜାଣୁ କହି ଦେ ।" ଅଶୋକ ବାବୁ ବ୍ୟାକୁଳ ଚିତ୍ତରେ ଜୀବନର ଦୁଇ ବାହୁକୁ ଧରି କହିବାକୁ ଲାଗିଲେ ।

ଏହି ସମୟରେ ଅଳକା ଦୁଇଗ୍ଲାସ ସରବତ୍ ଅଣି ଅସୁଥିଲେ କିନ୍ତୁ ଜୀବନକୁ ଦେଖି ଛିଡ଼ି ନ ପାରି ଚାଲିଯିବାକୁ ବସିଥିଲେ ।

ଅଶୋକବାବୁ ଉଠିଯାଇ ଅଳକାକୁ ଅଣି ବସାଇ ଦେଇ କହିଲେ, "ଅରେ ଜୀବନକୁ କଣ ଲାଜ କରୁଛ ମା । ସେ ପରା ମୋ କଲେଜ ବେଳର ଘନିଷ୍ଠ ବନ୍ଧୁ । ଏହାଙ୍କ କଥା କହୁଥିବାର ତୁମ ଆଗେ କହିଛି । ତାକୁ ଦେଖି ଚାଲିଯାଉଛ । ବସ ବସ । ହଁ ଗୋଟିଏ କଥା । ଜୀବନ ତୁମର ଭାଗ୍ୟାକୁ ଫେରାଇ ଅଣିବାର ଉପାୟ ବତାଇ ଦେବ ।"

ଅଳକାଙ୍କର ଯାହା ଲାଜ ସଙ୍କୋଚ ଥିଲା ସବୁ କୁଆଡ଼େ ଚାଲି-ଗଲା ।

ସେ ଉଦ୍‌ବିଗ୍ନ ସ୍ୱରରେ କନ୍ୟା ଲତାର ଖବର ପଚାରିଲା ।

ଜୀବନ ଦୀର୍ଘ ଶ୍ୱାସ ଛାଡ଼ିଲା, "ଏତେ ବ୍ୟସ୍ତ କାହିଁକି ? ମତେ ଶୋଷ ହେଉଛି ସରବତ୍‌ଟା ପିଇଦଏ ।"

ଅଲକାକୁ ବଡ଼ ଲଜ୍ଜ ମାଡ଼ିଲା । ସେ କହିଲା, "ମନରେ କିଛି ଭାବିବ ନାହିଁ ଜୀବନ ଭାଇ । ପିଇଦଅ, ତା ପରେ ସବୁ କହିବ । କନ୍ୟାଲାଗି ମୋର ମୁଣ୍ଡ ବଗିଡ଼ ଗଲାଣି ।"

ଜୀବନ ସରବତ୍‌ ପିଇ ପିଇ କହିଲା, "ତା ସତ ।"

ସରବତ୍‌ ପିଅ ସରିଲା ।

କିଛି ସମୟ ପାଇଁ ଉଭୟେ ନୀରବ ।

ନୀରବତା ଭାଙ୍ଗି ଜୀବନ ଆରମ୍ଭ କଲା, "ନବକୁମାର ମୋର ବାଲ୍ୟ ବନ୍ଧୁ । ଏକା ଗ୍ରାମରେ ଘର । ଖାଲି ବନ୍ଧୁ ନୁହଁ ଯାହା ସେ ହୋଇପାରେ, ଦୁନିଆରେ ଆଉ କେହି ହୋଇ ନ ପାରନ୍ତି । ଖୁବ୍ ସଚ୍ଚୋଟ ଲୋକ ସେ । ସେ ଗ୍ରାମରେ କାହାରିକୁ ଖାତିର କରେ ନାହିଁ । ଗ୍ରାମର ଜମିଦାର ଖୁବ ବଦମାସ୍ । ସେ ଲୋକମାନଙ୍କ ଠାରୁ ଶଠି ଧନ ଅପହରଣ କରେ । କେବଳ ଧନ ନୁହେଁ ଗ୍ରାମର ଯୁବତୀ କନ୍ୟାମାନଙ୍କୁ । ମୋର ଗୋଟିଏ ଭଉଣୀ ଅଛି ଜାଣ । ନବ ସହିତ ତାର ବିବାହ ହେବାର ଠିକ୍ ହୋଇଥିଲା । ବଦମାସ ଯେମିତ ଏ କଥା ଶୁଣିଛି ତା ଦେହ ଗରମ ହୋଇଗଲା । ସେ ବାଟ ଖୋଜିଲା କପରି ତାକୁ ସେ ହରଣ କରିବ । ମୁଁ କଟକରେ । ନବ ଅନ୍ୟ ଗ୍ରାମକୁ ଯାଇଛି । ଏହି ଅବସରରେ ମୋର ପିତାଙ୍କୁ ହତ୍ୟା କଲା ମାତାଙ୍କୁ ମଧ୍ୟ । ଶେଷରେ ମୋର ଏକମାତ୍ର ଭଉଣୀ ରେଖାକୁ ହରଣକଲା ।"

ଜୀବନ ଏତକ କହି ବାଦ ପକାଇଲା ।

ଅଶୋକ ବାବୁ ବେଁ ଅଳକା ଦେବୀ ଏକାଗ୍ର ଚିତ୍ତରେ ଜୀବନଙ୍କୁ ଗୃହିଁ ରହିଲେ ।

ଜୀବନ ଅଶ୍ରୁ ଲୁଚ ପୋଛି ପୁନର୍ବାର କହିଲା, "ନବ ଫେରି ଆସି ଯେମିତ ଏ କଥା ଶୁଣିଲା ସେମିତ ମୋ ପାଖକୁ ଧାଇଁ ଆସିଲା । ମୁଁ ସବୁ କଥା ଶୁଣିଲି ।

ତା କଥା ଶୁଣି ତା ସର ଧନ ଗ୍ରାମକୁ ବାହାରିଲି । ଗ୍ରାମରେ ପହଞ୍ଚି ଯାହା ଦେଖିଲି ଏବଂ ଶୁଣିଲି ମତେ ବଡ଼ ଅଶ୍ଚର୍ଯ୍ୟ ଲାଗିଲା । ଜମିଦାର ଘରେ ନ ଥିଲେ । ଗୁପ୍ତରେ ତାଙ୍କ ଘରେ ପଶିଲି । ସବୁଆଡ଼ ଅନୁସନ୍ଧାନ କଲି । ତାଙ୍କ ବୈଠକ ଖାନାରେ ପଡ଼ି ଦେଖିଲି ଟଣ୍ଡେ ଚିଠି ଲେଖା ହୋଇଛି ଏବଂ ତା ଛାପା କାଗଜରେ ଛାପା ହୋଇଛି । ସେଥିରେ ଅକ୍ଷର ଗୁଡ଼ିକ କଟିଯାଇଛି । ମୁଁ ସେ ଅକ୍ଷର ଗୁଡ଼ିକ ଯୋଡ଼ି ଜାଣି ପାରିଲି, ଜମିଦାର ରେଖାକୁ କଲିକତା ନେଇ ଯାଇଛି । ଫେରି ଆସିଲି ନବ ପାଖକୁ । ଦୁହେଁ ବାହାରିଲୁ କଲିକତା । ଏଠାରେ ଆସି ରହିଥିଲୁ ଗୋଟିଏ ହୋଟେଲରେ । ସେଇଁ ହୋଟେଲରେ ଭଗବାନଙ୍କ ଦୟାରୁ ଆମେ ପାଇଲୁ ତାର ଅନୁସନ୍ଧାନ । ହୋଟେଲର ମ୍ୟାନେଜର ହେଉଛି ବଦମାସ୍ ଜମିଦାରର ଡାହାଣ ହାତ । ସେଠାରେ ଦୁଇବନ୍ଧୁ ନାମ ବଦଳାଇ ଛଦ୍ମବେଶରେ ରହିଲୁ । ନାମ ଦେଲୁ ସୁର ଏବଂ ନର । ତା ପରେ ମ୍ୟାନେଜର ଆମକୁ ବହୁତ ଫୁସୁଲାଇଲା ତାଙ୍କ ଦଳକୁ ନେବାକୁ । କାରଣ ଆମେ ଯୁବକ । ଭଉଣୀକୁ ତ ଖୋଜିବାକୁ ଆସିଥିଲୁ, ତା କଥାରେ ରାଜି ହେଲୁ । ଦିନେ ରାତିରେ ଆମକୁ ସେ କଳା ପୋଷାକ ପିନ୍ଧିବାକୁ ଦେଲା । ମନ ହେଉ ନ ଥାଏ । ବାଧ୍ୟହୋଇ ପିନ୍ଧିଲୁ । ତା

ସଙ୍ଗେ ଅଣ୍ଡା ଖାଇବାକୁ ଗଲୁ । ବନ୍ଦୀବାଳାରର ଅଷ୍ଟାବନ ନମ୍ବର ଘର । ଘରର ବାହାର ଦେଖିବାକୁ ସୁନ୍ଦର ନୁହେଁ । ଭଙ୍ଗା ଏକ-ମହଲା । ତାହାର ବଡ଼ ବଡ଼ । ସମସ୍ତେ ଜାଣନ୍ତି ଯେ ଭିତରେ କେହି ନାହାନ୍ତି, କିନ୍ତୁ ତାର ଭିତରେ ସେ ବଦମାସ୍ ଅଡ୍ଡା ଜମାଇଛି । ଅଧୈର୍ଯ୍ୟ ହୁଅ ନାହିଁ । ଶୁଣ ତା ପରେ କଣ ହେଲା ।"

ଏଥର ବନ୍ଦୀ ଜୀବନ ସିଗାରେଟ୍ ଟାଣିବା ଲଗାଇଲା । ଗୋଟାଏ ଦମ୍ ଟାଣି କହିଲା, "ଆମେ ମ୍ୟାନେଜରଙ୍କ ସହିତରେ ଯାଇ ବହୁତ ବାଟ ଗଲୁଣି, ଠିକ୍ ହୋଇ ଭିତରକୁ ପଶିଲୁ । ତା ଭିତରେ ପଥର କଟା ହୋଇ ସବୁ ତିଆରି ହୋଇଚି, ଘର, ବନ୍ଦୀଶାଳା, ଗାଧୁଆ-ଘର ପ୍ରଭୃତି ।

ଅଶୋକ ବାବୁ ଚମକି ଉଠିଲେ । କହିଲେ, "ବନ୍ଦୀଶାଳା !"

ଜୀବନ କହିଲା, 'ହଁ, ଆହୁରି ଅନେକ କଥା ଅଛି । ଅଧୈର୍ଯ୍ୟ ନ ହୋଇ ଶୁଣ । ବନ୍ଦୀଶାଳାରେ ପରିଚାଳକ ପୁରୁଷ ନୁହେଁ, ଗୋଟାଏ ସ୍ତ୍ରୀ ଲୋକ, ଅତି ଭୟଙ୍କର ଏବଂ ନିର୍ମମ ବହୁତ ଗୁଡ଼ାଏ ଯୁବତୀ ସ୍ତ୍ରୀ । କେତେ ଜମିଦାର ସେମାନଙ୍କୁ ଲୁଚାଇ ରଖିଚି ଭାବି ବଡ଼ ଆଶ୍ଚର୍ଯ୍ୟ ହେଲି । ତା ପରେ ଶୁଣ ଆହୁରି ଅନେକ କଥା, ଆଶ୍ଚର୍ଯ୍ୟ ପ୍ରକାରେ ତିଆରି ସେ ସବୁ । ଶୂଳୀ ଦେବାର ବ୍ୟବସ୍ଥା ଅଛି ଭୟଙ୍କର ଭାବରେ । ସେ ସବୁ ଦେଖିଲେ ଦେହ ଶିହରି ଉଠେ । ବନ୍ଦୀଶାଳାରେ ମଧ୍ୟ କେତେକ ପ୍ରକାରର ନୂତନ ଧରଣର ବିଷାକ୍ତ ବାଷ୍ପ ତିଆରି ହୋଇଛି । ତାକୁ ଶୁଙ୍ଘିଲେ କେତେକ ଘଣ୍ଟାକ ପାଇଁ ବେହୋସ ହୋଇଯାଏ ଏବଂ ଆଉ ଗୋଟିଏ ଅଛି, ତାକୁ ଶୁଙ୍ଘିଲେ ମୃତ୍ୟୁ ଅନିବାର୍ଯ୍ୟ । ମୁଁ ତାର ସନ୍ଧାନ ନେବାକୁ ବହୁବାର

ଚେଷ୍ଟା କରନ୍ତି । କିନ୍ତୁ ସେଥିରେ କୃତକାର୍ଯ୍ୟ ହୋଇପାରୁ ନାହିଁ । ସେଠାକୁ ଗଲେ ସବୁ ଭଲ ଭାବରେ ବୁଝିପାରିବ ।

ପରପୋଡ଼ା ସିଗାରେଟ୍‌ରୁ ଦୁଇ ତିନି ଦମ୍ ଟାଣି ପୁନର୍ବାର ଜୀବନ ଆରମ୍ଭ କଲା, "କଲିକତାର ବଡ଼ ଜମିଦାରଙ୍କ ନାମ ବୋଧହୁଏ ଶୁଣିଥିବ । ତାଙ୍କର ମୃତ୍ୟୁପରେ ତାଙ୍କର ବିଧବା ସ୍ତ୍ରୀ, ରବି ନାମକ ଏକ ପୁତ୍ର ଓ ଅଣା ନାମକ ଏକମାତ୍ର କନ୍ୟା ଥିଲା । ବଦମାସ୍ ଧନ ଏବଂ ରୂପ ଲୋଭରେ ଜମିଦାରଙ୍କ ସ୍ତ୍ରୀଙ୍କୁ ମାରି ଭାଇ ଭଉଣୀଙ୍କୁ ଚୋରାଇ ନେଇ ରଖିଛି । ଭାଇଟି ମୋର ବିପଦର ସାଥୀ ଏବଂ ଭଉଣୀଟି, ତୁମ କନ୍ୟା ଏବଂ ମୋ ଭଉଣୀପରି ବନ୍ଦିନୀ ।"

ଏ କଥା ଶୁଣି ଅଶୋକ ବାବୁଙ୍କ ଆଖିରୁ ଅଶ୍ରୁକଣା ବାହାରି ପଡ଼ିଲା । ସେ ରାଗରେ କହି ଉଠିଲେ, ବଦମାସ୍ ଟୋକେ ଉପଯୁକ୍ତ ଶାସ୍ତି ଦେବି ।

ଅଳକା ଦେବୀ ଚୁପ୍ ହୋଇ ବସି ଶୁଣୁଥିଲେ । ତାଙ୍କର କିଛି କହିବାର ନ ଥିଲା । ସେଣୁ ସେ କିଛି କହିଲେ ନାହିଁ ।

ଜୀବନ ପୁନର୍ବାର କହିଲା, "ଧୈର୍ଯ୍ୟ ଧର, ଅଧୀର ହେଲେ ଚଳିବ ନାହିଁ । ଅଦ୍ଭୁତ ଅନେକ କଥା ଅଛି । ଜମିଦାର ଅତ୍ୟାଚାର କରିବାକୁ ଯାଇ ପାରେ ନା । ସେମାନଙ୍କୁ ନାନାପ୍ରକାର ପ୍ରଲୋଭନ ଦେଖାଏ । ନିରାଶ ହୋଇ ଫେରେ । ରେଖା, ଲତା ଏବଂ ଅଣା ତ ସେ ବଦମାସ୍‌ର ବନ୍ଦୀନାଗାରର ସ୍ତ୍ରୀମାନଙ୍କ ପରି ହୋଇ ନାହାନ୍ତି । ତାଙ୍କ ହୃଦୟରେ ପ୍ରତିହିଂସାର ବହ୍ନି ଜଳି ଉଠେଣି । କିନ୍ତୁ ଅବଳା ସେମାନେ ଉପାୟ ନାହିଁ ? କରିବେ ବା କଣ ? ତାଙ୍କୁ ସାହାଯ୍ୟ କରୁଛି ବା କିଏ ? ବହୁତ କଷ୍ଟରେ ତାଙ୍କ ବନ୍ଦୀ ଘରର ସନ୍ଧାନ ନେଇ ତା ଭିତରେ ପଶିଲି । ଆହା ! ଏତେ ବଡ଼ଘରର ଝିଅମାନଙ୍କର

କି ଶୋଚନୀୟ ଅବସ୍ଥା ! ନ ଖାଇ ନ ପିଇ ଦେହର କଣ୍ଟା ଉଠି-ଲାଣି । ଜଣେ ଶୋଇଛନ୍ତି । ମୋତେ ବଡ଼ ବାଧ ଲାଗିଲା । ତଥାପି ତାଙ୍କୁ ଅଶ୍ୱାସନା ଦେଇ ଫେରି ଆସିଲି ।

ଜୀବନର ଆଖି ଛଳ ଛଳ ହୋଇ ଆସିଲା । ସେ ବାଧ ବାଧ ହୋଇ କହିଲା, "ଅଦ୍ଭୁତ ମଧ କଥା ଅଛି ଅଶୋକ ଭାଇ । ତାଙ୍କ ଠାରୁ ଶୁଣିଲି ଯେ ଆସନ୍ତା ଅମାବାସ୍ୟା ଦିନ ଯଦି ସେମାନେ ବିଦ୍ୟାଙ୍କୁ ସ୍ୱାମୀ ପଦରେ ବରଣ ନ କରନ୍ତି ତେବେ ସେମାନଙ୍କର ମୃତ୍ୟୁ ନିଶ୍ଚିତ । ତା ସାଧିତ ହେବ ସ୍ୱ ହସ୍ତରେ । ମୋର ରକ୍ତ ଗରମ ହୋଇ ଉଠିଲା । ଅଜି ସାତଦିନ ମୋଟେ ବାକି । ଦାନ୍ତ ଚିପି କହିଲି, ଭୟ କରନା । ମୁଁ ଯାହାର ଭିତରେ ବଦମାସକୁ ଜୀବନ ନ ଛାଡ଼ି ରଖିବି ନାହିଁ । ତାପରେ ସେଠାରୁ ବିଦାୟ ନେଇ ଫେରି ଆସିଲି । ମ୍ୟାନେଜରଙ୍କୁ ଧପ୍ପଧଇ ଦେଇ ବହୁତ କଷ୍ଟରେ ଆଜି ଏଠାକୁ ଆସି ପାରିଛି । ତୁମେ ଯଦି ମୋତେ ସାହାଯ୍ୟ କରନ୍ତ, ମୁଁ ବଞ୍ଚି ମଧ ପାରନ୍ତି ।"

ଜୀବନ ଅଖିରୁ ଲୁହ ପୋଛି ଅଶୋକ ବାବୁଙ୍କ ହାତକୁ ଧରି ପକାଇ ମିନତି ଭରା ସ୍ୱରରେ କହିଲା, "ଆପଣ ମୋତେ ସାହାଯ୍ୟ ନ କଲେ ମୁଁ ଆଉ ବଞ୍ଚିବି ନାହିଁ । ଭଉଣୀଟି ଛଡ଼ା ଦୁନିଆରେ ମୋର ଆଉ କେହି ନାହିଁ । ଯେ କୌଣସି ପ୍ରକାରେ ତାକୁ ମୋତେ ରକ୍ଷା କରିବାକୁ ହେବ । କହନ୍ତୁ, ମୋତେ ସାହାଯ୍ୟ ଦେବେ ?"

ଅଶୋକ ବାବୁ ଜୀବନକୁ ଭରସା ଦେଇ କହିଲେ, "ମୁଁ ସାହାଯ୍ୟ ଦେବାକୁ ପ୍ରସ୍ତୁତ ଅଛି ।"

ଜୀବନ ଅଉ ଟିକିଏ ପାଖକୁ ଯାଇ କହିଲା, "ତେବେ ଶୁଣ, ମୁଁ ଆଜି ଯାଉଛି । ଚତୁର୍ଦ୍ଦଶୀ ରାତ୍ରରେ ମୁଁ ଆସିବି । ବୋଧେ ନୁହେଁ । ଦେଖ, ନବ ଏକ ହବାପୁନ୍ତି ଦଳଙ୍କୁ ନେଇ ଆସିବ । ଭୟ

କରିବ ନାହିଁ । ତୁମ୍ଭର ଶୋଇଲା ଘରେ ସେଦିନ କେହି ନଥିବ । ସେ ଘରଟା କେବଳ ପୋଲିସମାନଙ୍କ ଦ୍ୱାରା ପୂର୍ଣ୍ଣ ହୋଇଥିବ । ଅବଶ୍ୟ ପ୍ରକାଶ୍ୟ ଭାବରେ ନୁହେଁ । ସମସ୍ତେ ସେ ଘରେ ଲୁଚିଥିବେ । ସେମାନେ ଆକ୍ରମଣ କରିବା ପୂର୍ବରୁ ଏମାନେ ଯୋରରେ ତାଙ୍କୁ ଆକ୍ରମଣ କରି ସେମାନଙ୍କ ହସ୍ତରୁ ସବୁ ଅସ୍ତ୍ର ଛଡ଼ାଇ ନିଅନ୍ତୁ । ତା ପରେ ସେମାନଙ୍କୁ ହାତ କଡ଼ି । ଏ ସବୁ ଯେପରି ଅତ୍ୟଶୀଘ୍ର ଏବଂ ଚାଲାକ ଭାବରେ ହୁଏ । ତା ପରେ ଯେତେ ଡକାୟତ ଆସୁଥିବେ ସେତକ ପୋଲିସଙ୍କୁ ସେମାନଙ୍କ ବେଶ ପୋଷାକ ହୋଇ ମୁଁ ନେଇ ଯିବି । ସେଠାରେ ଯଥାସ୍ଥାନରେ ମୁଁ ରଖିଦେବି । ତା ମଝିଦିନ ଆଉ ଯେଉଁମାନେ ଥିବେ ସେମାନଙ୍କୁ ଗୋଟାଏ ମୋଟର ଏଇପରି ଭାବରେ ନେଇ ଆସିବ । ତା ପରେ ତୁମକୁ ନେଇଯିବି ସେଇ ଗୁପ୍ତ-ଘରକୁ । ସେଠାକୁ ଗଲେ ଆଉ ଯାହା କରିବା କରିଯିବ । ସ୍ତ୍ରୀ ଲୋକଙ୍କୁ ଗିରଫ କରିବାକୁ ମୁଁ ପାରୁ ପର୍ଯ୍ୟନ୍ତ ଚେଷ୍ଟା କରିବି । ସେମାନେ ବଡ଼ ଭାରି ଚଲାକ । ଟିକିଏ ଟେରେ ପାଇଲେ ସେମାନେ ଖୁବ ସାଇତ୍ କରିବେ ।"

ଜୀବନ ଉଠି ଠିଆ ହେଲା, କହିଲା "ମୁଁ ଯାଉଛି" ଆଜ ଦ୍ୟସ୍ତ ହୁଅନ୍ତୁ ନାହିଁ । ସବୁ ଠିକ କରି ରଖିଥିବି । ଚତୁର୍ଥ ଦିନ ରାତି । ଠିକ୍ ରାତି ବାରଟା । ଭୁଲି ନଯାନ୍ତୁ ଯେପରି । ମୁଁ ଆସି ପହଞ୍ଚିବି । ବିଦାୟ ଅଶୋକ ଭାଇ ବିଦାୟ । ନମସ୍କାର ଅଳକାଦେବୀ ପରେ ଦେଖା ହେବ । ଏତିକି କହି ଜୀବନ ପେଛ୍ନ ଦ୍ୱାର ଦେଇ ଯିବାକୁ ବାହାରିଲା ଠିକ ଏଇ ମୁହୂର୍ତ୍ତରେ ଗୋଟାଏ ଗୁଳି ସାଇଁ କରି ତା କାନ ପାଖ ଦେଇ ଚାଲିଗଲା ।

ଅଶୋକ ବାବୁ ଏବଂ ଅଳକା ଦେବୀ କଣ ହେଲା ବୋଲି ଚିତ୍କାର କରି ଉଠିଲେ । କିନ୍ତୁ ସେ ଗୋବିନ୍ଦ ... ମୁହଁ ଆଡ଼କୁ

ଥରେ ବୁଲି ଗଲା, ତାର ହଠାତ୍ ନଜର ପଡ଼ିଲା ଗୋଟାଏ ବୁଢ଼ା ଉପରେ । ଗୋଟାଏ ଲୋକ ସେଥିରୁ ହାହାଁରି ପଳେଇ ଯାଉଛି । ଜୀବନ ଦୁଇଗୁଣ ଡେଇଁ ମାରି ତାର ଦୁଇ ସବଳ ହାତରେ ଲୋକଟିର ବେକକୁ ଚିପି ଧରିଲା । ଲୋକଟି ପଳାଇ ଯିବାକୁ ଖୁବ୍ ଚେଷ୍ଟା କଲା, କିନ୍ତୁ ଜୀବନର ମୁଷଳ ହାତରୁ ରକ୍ଷା ପାଇବାର ବାଟ ତାର ନଥିଲା । ଜୀବନ ଦୁଇ ତିନୋଟି ଭୁଷୀ ମାରିଲା । ତାର ନାକରୁ ଅନର୍ଗଳ ରକ୍ତ ବୋହିବାକୁ ଲାଗିଲା । ସେ ସେଇଠାରେ ଚେତାଶୂନ୍ୟ ହୋଇ ପଡ଼ି ରହିଲା ।

ଅଶୋକ ବାବୁ ଏବଂ ଅଳକା ଦେବୀ ଆଶ୍ଚର୍ଯ୍ୟହୋଇ ଧାଇଁ ଆସିଲେ ।

ଜୀବନ, ହତାୟୁତଟାକୁ ଟେକିନେଇ କହିଲା, "ଭିତରକୁ ଚାଲନ୍ତୁ ।

ଭିତରେ ପହଞ୍ଚି ଜୀବନ କହିଲା, "ପୋଲିସକୁ ଫୋନ୍ କରନ୍ତୁ ।"

ଅଶୋକ ବାବୁ ଫୋନ୍ କରି ଫେରି ଆସିଲେ । କିଛି ସମୟ ପରେ ଗୋଟିଏ କନେଷ୍ଟବଲର ନେତୃତ୍ୱରେ ଦୁଇଜଣ ପୋଲିସ ଆସି ଦସ୍ୟୁଟାକୁ ନେଇଗଲେ ।

ଅଶୋକ ବାବୁ କହିଲେ, "ଧନ୍ୟ ତୁମେ ଜୀବନ । ଯାହା ମୁଁ ଏତେବର୍ଷ ଲାଗି କରି ପାରି ନଥିଲି ତା ତୁମେ ଖୁବ୍ ଅଳ୍ପଦିନ ମଧ୍ୟରେ କରିପାରିଲ ।"

"ହାଁ ହାଁ, ଏପରି କିଛି ନାହିଁ । ସବୁ ଭାଗ୍ୟ ସବୁ । ହେଉ ମୁଁ ଯାଉଛି । ନମସ୍କାର ।" କହି ଜୀବନ ବିଦାୟ ନେଲା ।

ଅଳକା ଦେବୀ ଏବଂ ଅଶୋକ ବାବୁ ବୋକାଙ୍କ ପରି ଜୀବନର ଗତିପଥକୁ ଅନାଇ ରହିଲେ ।

—୧୨—

ହୋଟେଲର ମ୍ୟାନେଜର ତାଙ୍କୁ ଦେଖି ଖୁବ ଖୁସି ହେଲା ; ଏବଂ ହସି ହସି କହିଲା, "ସହର ବୁଲା ତ ହେଲା ଏଥର ଅଳ୍ପ ସମୟରେ ବସାକୁ ଯିବା ।"

ବସା କେଉଁଠା ପାଠକ, ପାଠିକାମାନେ ଜାଣି ପାରୁଥିବେ । ମୋର ଆଉ ଅଧିକ ଲେଖିବା ଦରକାର ନାହିଁ ।

ତା ପରେ ସେ ଦଳ ସହରେ ସମସ୍ତେ ଫେରି ଆସିଲେ ଗୁପ୍ତ-ଘରକୁ । ଜୀବନ ବୃତ୍ତାନ୍ତ ଗୋଟାଏ ମସ୍ତବଡ଼ ଧନୀର ଧନ ସମ୍ପତ୍ତି ସବୁ ଠିକ୍ କରି ଆସିଥିଲେ ଜାଣି ସମସ୍ତେ ଯାହା ଖୁସି ହେଲେ ହେଲେ, କିନ୍ତୁ ସବୁଠାରୁ ବେଶୀ ଖୁସି ହେଲା ଜମିଦାର ନିଜେ ।

ତିନି ବନ୍ଧୁ ଜୁସି ଆଉ ହୋଇ ଚାଲିଲେ । ଭାଲେ କେଉଁଠି ଧରା ପଡ଼ିଯିବେ । ତେବେ ସବୁ ଶେଷ । ବର୍ତ୍ତମାନ କଥା ରହିଲା । ବଣ୍ଟନ ଶିଖିବା ।

ତା ପରଦିନ । ଦିନ ୯ଟା ବାଜିଲାଣି । ରବି ଆସି ସୁବି, ଜଗନ୍ନୁ ଉଠାଇ ଦେଲା । ତିନିହେଁ ନିତ୍ୟକର୍ମ ସାରିବାକୁ ଗଲେ । ନିତ୍ୟକର୍ମ ପରେ ଜଣେ ଦସ୍ୟୁ ଆସି କହିଲା, "ତୁମକୁ ଜମିଦାର ଡ଼ାକାଇ ପଠାଇଛନ୍ତି ।"

ଜଗ ଭୟ ଗଳାରେ କହିଲା, "ସୁରଭୀଇ ଜମିଦାର ପୁଣିବାର ତାହାଙ୍କୁ ଡ଼କାଇଲା । ମୁଁ ତ ତାହାଁ କିଛି ବୁଝି ପାରୁ ନାହିଁ । ବୋଧେ ଆମକୁ ସନ୍ଦେହ କରୁଛି ।"

ଦେଖାଯାଉ କ'ଣ ହେଉଛି । ସୁବି ଜଣାଇଲା । ରବି କହିଲା, "ତେବେ ଶୀଘ୍ର ଚାଲ ।"

ତଳହେଁ ଯାଇ ଦେଖିଲେ ଘରଟି ସବୁ ଦସ୍ୟୁମାନଙ୍କ ଦ୍ୱାରା ପୂର୍ଣ୍ଣ । ଜମିଦାର ପଲଙ୍କ ଉପରେ ଶୋଇଛନ୍ତି । ମଦପିଅ ଚାଲିଛି, ନାଚ ହେଉଛି । "ବା, ବା, ପା ଚାଲିଯା" ଶବ୍ଦରେ ଦ୍ୱାର ଘର ପୂର ଯାଉଛି । ସମସ୍ତଙ୍କ ହାତରେ ମଦ ଗ୍ଲାସ, ସମସ୍ତେ ମଦ ନିଶାରେ ଢୋଳାଉଛନ୍ତି । ସମସ୍ତଙ୍କର ଦୃଷ୍ଟି ରହିଛି ନର୍ତ୍ତକୀ ଅଙ୍ଗକୁ । ଏମାନଙ୍କୁ ଦେଖି କିଛିକ୍ଷଣ ପାଇଁ ସବୁ ବନ୍ଦ ହୋଇଗଲା ।

ଜମିଦାର ନିଜ ଆସନରୁ ଉଠି ଆସି ତାଙ୍କୁ ତଳଟା ଆସନରେ ବସାଇ ଦେଲେ ଏବଂ ପଚାରିଲେ, "କାଲି ତଳହେଁ ଯାଇଥିଲ ସହର ବୁଲି, ମୋ ପାଇଁ କ'ଣ ଆଣିଛ ?"

ଏ ପ୍ରଶ୍ନ ଶୁଣି ଏମାନେ ଟିକିଏ ନିଶ୍ଚିନ୍ତ ହେଲେ । ସୁର ଉଠି ଠିଆ ହେଲା ଏବଂ ସବୁ କଥା କହିବାକୁ ଆରମ୍ଭ କଲା ।

ସମସ୍ତେ ସତୃଷ୍ଣ ନୟନରେ ତା ଆଡ଼କୁ ଅନାଇ ରହିଲେ ।

ସେ କହି ଚାଲିଲା, 'ଅଶୋକ ବାବୁଙ୍କୁ ତ ସମସ୍ତେ ଜାଣନ୍ତି । ତାଙ୍କର ସ୍ନେହର କନ୍ୟା ଅମଧାରେ ବନ୍ଦିନୀ । ସେହି ଅଶୋକବାବୁଙ୍କ ଘରକୁ ଲାଗି ଆଉ ଗୋଟିଏ ବଣିକର ଘର ଅଛି । ତାର ଅତୁଳନୀ ଧନ ସମ୍ପତ୍ତି । ହିସାବ ଦେବାକୁ ଗଲେ ବର୍ଷ ବର୍ଷ ଲାଗିଯିବ । ମୁ କହୁଛି ଯଦି ମତେ କିଛି ସାହାଯ୍ୟ ଦିଅ ଯାଆନ୍ତା, ମୁଁ ଏହି ଦୁଇ ଦିନ ମଧ୍ୟରେ ତାର ଧନ ସମ୍ପତ୍ତି ସବୁ ଏଠାକୁ ବୋହି ଆଣନ୍ତି ଏବଂ ଆସନ୍ତା ଅମାବାସ୍ୟାକୁ ମଜଲିସି କରନ୍ତେ ।"

ମଦ ନିଶା ତ ଛୋଟିଛି । ଭଲ ମନ୍ଦ ବୁଝୁଛି କିଏ ? ଜମିଦାର କହିଲେ, 'ତା ହେଲେ କାଲି ବାହାର ପଡ଼ ।"

ସୁର କହିଲା, 'ନା ଆଜ୍ଞା, ଆଜି ଦୁଇ ଦିନ ଯାଉ ।'

ଜମିଦାର 'ହର' ବନ୍ଧୁ ସଲଙ୍କ ଉପରେ ବସିଲେ । ପୁଣି ଗ୍ଭଲିଲା ନାଚ । ବିଶ୍ରାମ ନାହିଁ । ସମସ୍ତଙ୍କ ଦୃଷ୍ଟି ପଡ଼ୁଛି ସେଠାରେ ।

ଜନାର୍ଦ୍ଦନ ଚୁପ୍ ଚାପ ଉଠି ଗ୍ଭଲି ଆସିଲେ । ଧୀରେ ଧୀରେ ଗ୍ଭଲେ ବଙ୍ଗଳାଗାରକୁ ।

ସମସ୍ତେ କାର୍ଯ୍ୟବ୍ୟସ୍ତ । ଜନାର୍ଦ୍ଦନ ବାହାରେ ଲୁଚି ରହି ଝରକା ବାଟେ ଅନାଇ ସବୁ ଶୁଣୁଥିଲେ, କପଟ ବନ୍ଧୁଙ୍କ ବାକ୍ୟମାନ ଟିପିଥର ଉଚ୍ଚାରୁଛନ୍ତି ।

ଘଣ୍ଟାକ ମଧ୍ୟରେ ସୁର ସବୁ ବୁଝିଗଲ । ସେମାନଙ୍କ କଥା ଶୁଣି, ଚୁପ୍ ଚାପ ଗ୍ଭଲି ଆସିଲ । କେହୁ ଜାଣିଲେ ନାହିଁ । ସେତେବେଳେଯାଏ ନାଚ ବନ୍ଦ ହୋଇ ନାହିଁ । ମଦ ନିଶାରେ କେତେକ ନିଜ ନିଜ ଆସନ ଗ୍ଭଡ଼ି ତଳେ ପଡ଼ିଛନ୍ତି । ଜମିଦାର ଚେଷ୍ଟାରେ ଏଡ଼ ଗଲାଣି । ନର୍ତ୍ତକୀ ମଧ୍ୟ ନାଚି ନାଚି ପଡ଼ିଗଲା ।

ତାପରେ ଜନାର୍ଦ୍ଦନ, ବାହାରି ଆସିଲେ ।

ସେ ଦିନ ସ୍ତବ୍ଧ ନିସ୍ତବ୍ଧ । ଜଗତ ସୁପ୍ତ । ଡାକୁମାନେ ମଧ୍ୟ । ନିଦ ନାହିଁ ଜନାର୍ଦ୍ଦନଙ୍କୁ ।

ଠିକ୍ ରାତି ୧୨ଟା । ନର କହିଲା, "ରହିବାକୁ ଠିକ୍ ଅଛି" । ରାତି ଅନ୍ଧାରରେ ସମ୍ମତି ଜଣାଇଲା ।

ତା ପରେ ଜନାର୍ଦ୍ଦନ ଆଗକୁ ଗ୍ଭଲିଲେ । କୁଆଡ଼େ ଯେ ଗ୍ଭଲିଛନ୍ତି ତାଙ୍କୁଇ ଜଣା । ବାଟରେ ବଙ୍ଗଳାଗାରଟା ପଡ଼ିଲା । ରାତି ଗ୍ଭରି ବାହାର ଦ୍ୱାର କବାଟ ଖୋଲି ଦେଲା । ରାତି ଏବଂ ନର ଦୁଆର ମୁହଁରେ ଜଗି ରହିଲେ । ଭିତରକୁ ପଶିଲା ସୁର ଡରି ଡରି ।

ହାତରେ ଗୋଟାଏ ଛୋଟ ଛୁରି ଜକୁଛି । ଅନ୍ଧାରରେ ବାଟ କଢ଼ାଉଛି । ଗୋଟାଏ ଆଲମାରି ପାଖକୁ ସୁର ଆସିଲା । ଶୀଘ୍ର ଶୀଘ୍ର

ତାମ ସାରିବାକୁ ହେବ । ସ୍ତ୍ରୀ ଲୋକଙ୍କ ପ୍ରବେଶ ଦ୍ୱାରଟା ମେଲା । ଏଣିକି ତେଣିକି ଚାହିଁ ସୁର ଅଲମାରି ଖୋଲିଲା । ଶବ୍ଦ ମଧ୍ୟ ହେଲା ନାହିଁ । ଝଟ୍ ସବାଇ ବାହାର କଲା ନେଲଅ ଔଷଧଟାଏ । ଟେବୁଲ ଉପରେ ଧୀର କରି ରଖିଲା । ଆଉ ଗୋଟାଏ ଖାଲି ବୋତଲରେ ପାଣି ଆଣିଲା । ସେଇ ନେଲି ଔଷଧରୁ ଟୋପାଏ ପକାଇଲା । ତା ପରେ ପୋଟାସ୍ ବାହାର କରି ପାଣିରେ ମିଶାଇଲା । ନାଇଟ୍ରିକ ଏସିଡରୁ ଦୁଇ ଚାରି ଟୋପା ପକାଇଲା, ସଲଫର ଡ଼ାୟୋକ ସାଇଡ୍ ଦୁଇଗ୍ରାମ୍ ମିଶାଇବାରୁ ଏକ ପ୍ରକାର ଉତ୍କଟ ଗ୍ୟାସ ବାହାରିଲା । ତାକୁ ଆଉ ଗୋଟିଏ ଟେଷ୍ଟ ଟିଉବ୍ ରେ ପୂରାଇ ଟିପି ବନ୍ଦକଲା । କିଛି ସମୟ ପରେ ଗ୍ୟାସଟି ଧଳା ରଙ୍ଗର ହୋଇଗଲା । ସୁର ଆନନ୍ଦରେ ନାଚି ଉଠିଲା, ସବୁ ସରିଲା । ତଥାପି ହାତ ଥରୁଥାଏ । ଦେହରୁ ଝାଳ ଗମ ଗମ ହୋଇ ବୋହି ଯାଉଥାଏ । କାଳେ କିଏ ଆସି ଦେଖିବ । କିନ୍ତୁ ଭୟ କରିବାର କୌଣସି ବେଳ ଏ ନୁହେଁ । ଯେ ଯେଉଁଠି ରହିବାର କଥା ତାକୁ ସେଇଠି ରଖିଲା ।

ଅନ୍ଧାରରେ ଅଲମାରି ବନ୍ଦ କରିବାକୁ ଯାଉଛି ହଠାତ୍ ସ୍ତ୍ରୀ ଲୋକଙ୍କ ପ୍ରବେଶ ଦ୍ୱାର ପାଖରେ ଡାକଟି ଶୁଭିଲା, "ଘର ଭିତରେ କିଏ ?"

ସୁର କିଛି ନ କହି ପଳାଇ ଯିବାକୁ ବସିଲା ବେଳେ ତା ପଛଅଡ଼ୁ କିଏ ଜଣେ ଭିଡି ଧରିଲା । ସୁର କଣ କରିବ କିଛି ଭାବି ପାରିଲା ନାହିଁ । ହଠାତ୍ ତାର ପାଟି ଚିପି ଧରିଲା ଯେପରି ସେ ପାଟି କରି ନ ପାରେ । ପକେଟରୁ ରୁମାଲ କାଢି ତାର ମୁହଁ ବାନ୍ଧି-ବାକୁ ଗଲା । ପ୍ରଥମ ଥର ପାଇଁ ତା ଆଶା ବିଫଳ । ସେ ଗୁଡ଼ ପାଖର [illegible]ଟାକୁ ଧରି ଟାଣି ନେବାକୁ ବସିଚି । ସୁର ହାତ ମାଡ଼ି ଜାଣି

ପରିଲା ସେ ଜଣେ ସ୍ତ୍ରୀ ଲୋକ । ସ୍ତ୍ରୀ ଲୋକଙ୍କର ଯେ ଏତେ ବଳ ହୋଇପାରେ ସେ ବିଶ୍ୱାସ କରି ପାରିଲା ନାହିଁ । କିନ୍ତୁ ସଙ୍କଟରେ ପଡି ସେ ବିଶ୍ୱାସ କରିବାକୁ ବାଧ୍ୟ ହେଲା । ତାର ସବୁ ବଳ ପ୍ରୟୋଗ କରି ନା ପାଟିରେ ରୁମାଲ ବାନ୍ଧି ଦେଲ ଏବଂ ତାକୁ ତା ଲୁଗାରେ ବାନ୍ଧି ପକାଇ ,ସେଇ ଟେଷ୍ଟଟ୍ୟୁବ୍‌ଟା ନେଇ ପଳାଇ ଆସିଲା । ତାହାରୁ କବାଟ ବନ୍ଦ ହୋଇଗଲା ।

ତା ପରଦିନ ଗୁପ୍ତଘରେ ମହାମେଳ ଜମିଛି । କାଲି ରାତିରେ ଅମର ଘରେ ପଶି କିଏ ସୁମତିକୁ ବାନ୍ଧି ପକାଇଛି । ଘଟଣା କଣ ଜାଣିବାକୁ ରବି ଏବଂ ସୁର ଦୌଡ଼ିଗଲେ । କଥା ଏହି ଯେ କାଲି ରାତିରେ ସୁମତି ଦେବୀ କାହିଁକି କେଜାଣି ରନ୍ଧନାଗାରକୁ ଆସିଥିଲେ । ସେ ଘରେ କେହି ଜଣେ ପଶି ଚୋରି କରୁଥିଲା । ସୁମତି ଦେବୀ ତାକୁ ଦେଖି ଆକ୍ରମଣ କଲେ, କିନ୍ତୁ ପାରିଲେ ନାହିଁ । ପାଟି କରିବା ପୂର୍ବରୁ ତାଙ୍କ ପାଟି ବନ୍ଦ ହୋଇ ଯାଇଥିଲା ସେ ଲୋକଟା ଦ୍ୱାରା । ତାପରେ ଲୋକଟା କେଉଁ ଆଡେ ଖସିଗଲା । ଅମର ଭିତରେ ପୁଣି ଏପରି କିଏ ବଦମାସ୍ ଅଛି । ବାସ ଘରେ ପୁଣି ନିରାପଦ ନାହିଁ । ଏ ବିପଦ ପୂର୍ଣ୍ଣ ସ୍ଥାନରେ ରହି ପୁଣି ବିପଦକୁ ହାତ ବଢାଉଛୁ । ତାର ଆୟୁଷ ପୂରିଲଣି । ଦେଖଯାଉ ।

ସମସ୍ତଙ୍କୁ ସଭାକୁ ଡକରା ହେଲା । ସଭା ଗୃହ ଚୋରମାନଙ୍କ ଦ୍ୱାରା ପୂର୍ଣ୍ଣ । ରବି, ସୁର ଏବଂ ଜର ଯାଇ ନିଜ ନିଜ ଆସନରେ ବସିଲେ । ଜମିଦାରଙ୍କ ପାଖରେ ସୁମତି ଦେବୀ ବସିଛନ୍ତି । କିଛି ସମୟ ପାଇଁ ଘରଟି ନିସ୍ତବ୍ଧ ହୋଇଗଲା । ସମସ୍ତଙ୍କ ମନରେ ଛନକା ପଶିଲା । ସମସ୍ତେ କହିବାକୁ ଲାଗିଲେ କାଲି ସୁମତି ଦେବୀ

ସେମାନଙ୍କ ନାମରେ କହି ଦେବେ । ତେବେ ସର୍ବନାଶ । ଶୂଳୀ, ଭୀଷଣ ଦଣ୍ଡ । କିନ୍ତୁ ପ୍ରମାଣ ଦେବା ସବୁ ବର୍ଣ୍ଣନା କରିସାରି କହିଲେ, 'ମୁଁ ଅନ୍ଧାରରେ ତାହାକୁ ଚିହ୍ନି ପାରି ନାହିଁ ।"

ଏକଥା ସୁମନ୍ତଙ୍କ ମନରେ ଅଶ୍ୱାସନା ଅସିଲା ।

କିଛି ସମୟ ପରେ ଜମିଦାର ଉଠି କହିଲେ, 'ସେ ଦସ୍ୟୁକୁ ଖୋଜି ବାହାର କରିବା ନିତାନ୍ତ ଦରକାର, କିନ୍ତୁ ଏ ଭାର କିଏ ନେବ ? ସେମିତିଆ ଲୋକ ହାତରେ ଏ ଭାର ନ ରହିଲେ ମହା ବିପଦ । ନିଶ୍ଚୟ କେହି ପୋଲିସ ଲୋକ ଆମ ଭିତରେ ରହିଛି । ବିପଦ ଅସ୍ତେ ଅସ୍ତେ ଘନେଇ ଅସୁଛି ।"

ସମସ୍ତେ ବହୁତ ବୁଦ୍ଧି ପାଇଁଲେ । ଶେଷକୁ ମ୍ୟାନେଜର କହିଲେ, "ସୂର ନରଙ୍କ ଉପରେ ଏ ଭାର ଦିଆଯାଉ । ସେମାନେ ଏ ବଦମାସକୁ ବାହାର କରିବେ ।" ସମସ୍ତେ ସମ୍ମତି ଜଣାଇଲେ, ଜମିଦାର ମଧ୍ୟ । ଶେଷକୁ ଅନ୍ୟ ବିଷୟରେ କିଛି ଆଲୋଚନା ହୋଇ ସଭା ଭଙ୍ଗ ହେଲା ।

ସୂର ନର ଅଉ ଚୋରକୁ ପାଇଲେ ନାହିଁ । ଅମାବାସ୍ୟା ନିକଟରୁ ନିକଟତର ହେବାକୁ ଲାଗିଲା ।

ଚତୁର୍ଥ ଦିନ ରାତି । ରବି, ସୂର, ଏବଂ ନର ଜମିଦାରଙ୍କଠାରୁ ଅନୁମତି ଆଣି ଦଶଜଣ ଚୋରଙ୍କୁ ଠିକ କଲେ । ରାତି ନଟା ବେଳକୁ ଗୋଟି ଗୋଟି ହୋଇ ସମସ୍ତେ ଉଠିଲେ । ରାତି ବାରଟା । ସବୁ ଅନ୍ଧ ନିସ୍ତନ । ଅନ୍ଧାର ରାତିରେ ତେର ଜଣ ଡାକୁ ଛୁରା ଏବଂ ପିସ୍ତଲ ଧରି ଗୁଲିଚନ୍ତି । ସମସ୍ତେ ଅସି ପହଞ୍ଚିଲେ ଗୋଟାଏ ମସ୍ତବଡ଼ କୋଠାର ସମ୍ମୁଖରେ । ସମସ୍ତେ ସେ କୋଠା ଦେଖି ଅଶ୍ଚର୍ଯ୍ୟ ହୋଇଗଲେ ।

ସୁବ ନବଙ୍କ ଉପରେ ସମସ୍ତେ ଭାରି ଖୁସି । ଫାଟକ ଡେଇଁ ସମସ୍ତେ ଗୋଟି ଗୋଟି ହୋଇ ତା ଭିତରକୁ ପଶିଲେ ।

ଅଶୋକବାବୁ ବଡ଼ ଚାଲାକ । ସବୁ ଖବର ଥାନାଠ ପହଞ୍ଚାଇ ଦେଇଚନ୍ତି । ପୋଲିସମାନଙ୍କୁ ଠିକ୍ ସ୍ଥାନରେ ସନ୍ଧ୍ୟା ବେଳକୁ ନେଇ ଦେଇଛନ୍ତି ।

ଆଗରେ ଦଶଜଣ ପୋଲିସ ପଛରେ ତିନିବନ୍ଧୁ । ସମସ୍ତେ ଭିତରକୁ ପଶିଲେ । ଖୁବ୍ ଧୀରେ ଧୀରେ ଗୁହାଅନ୍ଧାରକୁ ଅନାଇଁ ଅନାଇଁ ପଶିଲେ । ଘର ଭିତରକୁ ପଶି ଉପର ମହଲାକୁ ଉଠିଲେ । ଅଶୋକ ବାବୁଙ୍କ ଶୋଇବା ଘରକୁ । ଦୁଆର ମୁହଁରେ ସମସ୍ତେ ପହଞ୍ଚିଲେ । ରବି ଚୁପ୍ ଚୁପ୍ କରି କହିଲା, "ଧୀରେ ଧୀରେ ପଶ । ଏଇ ଘରେ ଶୋଇଛି ଡାକୁ ପଲଙ୍କ ଉପରେ । ମୁଣ୍ଡ ତକିଆ ସାବଧାନତାର ସହିତ ଖୋଜି ନେବ । ଘରର ଗୋଟାଏ କଣରେ ଲୁହା ସିନ୍ଦୁକ ଥୁଆ ହୋଇଛି । ଜିନିଷପତ୍ର ନେଇ ଚାଲି ଆସିବ । ଆମେ ଏଇଠି ଜଗିବୁ ।"

ତିନିବନ୍ଧୁ ପହରା ଦେଲେ । ଅନ୍ୟ ଦଶଜଣ ଭିତରକୁ ପଶିଲେ । ସମସ୍ତେ ପଶି ସାରିଲେ, ଜଣକ ହାତର ଟର୍ଚ୍ଚ ଲାଇଟି ଜଳି ଉଠିଲା । ସେମାନେ ଦେଖିଲେ ଜଣେ ଲୋକ ପଲଙ୍କ ଉପରେ ଶୋଇ ଘୁଙ୍ଗୁଡ଼ି ମାରୁଛି । ସମସ୍ତଙ୍କ ମୁହଁରେ ହସ ଫୁଟି ଉଠିଲା । ସେମାନଙ୍କ ମଧ୍ୟରୁ ଜଣେ ତକିଆ ତଳୁ ଚାବି ଆଣିଲା, ଧୀରେ କରି ସିନ୍ଦୁକ ଖୋଲିଲା, କିନ୍ତୁ ଏ କଣ ? ସେ ଭିତରେ କିଛି ନାହିଁ । ଚିତ୍କାର କରି ଉଠିଲେ । ହଠାତ୍ ପଛକୁ ଚାହିଁ ଦେଖିଲେ କବାଟ ବନ୍ଦ ଏବଂ ପୁଲିସମାନଙ୍କ ଦ୍ୱାରା ଘରଟି ପୂର୍ଣ୍ଣ ହୋଇଛି । ସବୁ ପୁଲିସଙ୍କ ପିସ୍ତଲର ନଳ ସମସ୍ତଙ୍କ ଛାତି ଉପରେ ।

ଜଣେ ପୁଲିସ ଗମ୍ଭୀର ଭାବରେ କହିଲା, "ତୁମ ପିସ୍ତଲ ଯାହା କିଛି ଅଛି ବାହାର କରି ତଳେ ଥୋଇ ଦିଅ ନୋହିଲେ ପ୍ରାଣବାୟୁ ଉଡ଼ିଯିବ ।"

ଦସ୍ୟୁମାନେ କିଛି ସମୟ ପର୍ଯ୍ୟନ୍ତ ଚିଅ ହୋଇ ରହିଲେ । ତାପରେ ସେମାନେ ପୁଲିସମାନଙ୍କ ଉପରକୁ ଡେଇଁ ପଡ଼ିଲେ । ପୁଲିସମାନେ ଏଥି ପୂର୍ବରୁ ଖୁବ୍ ସତର୍କ ଥିଲେ । ସେମାନେ ଏହି ସମୟରେ ଗଛକୁ ଦୁଇଁ ଗଲେ । ଏମାନେ ଭୂଷଭାଷ ହୋଇ ତଳେ ପଡ଼ିଗଲେ । ଅଳ୍ପ ପଲକ ମାତ୍ରକେ ସବୁ ଦସ୍ୟୁ ବନ୍ଦୀ ହେଲେ । ସମସ୍ତଙ୍କୁ ହାତକଡି ପିନ୍ଧାଇ ଦିଆଗଲା । ତାପରେ ଚୋଟିଏ ବଡ଼ ଲଞ୍ଚରେ ସମସ୍ତଙ୍କୁ ବସାଇ ଜେଲକୁ ନିଆଗଲା ।

ଅଶୋକବାବୁ ଏବଂ ଅଲକା ଦେବୀ ଉଭିବନ୍ଧୁଙ୍କୁ ଧନ୍ୟବାଦ ଦେଲେ । ସେମାନଙ୍କ ଆଖିରୁ ଆନନ୍ଦାଶ୍ରୁ ବହିବାକୁ ଲାଗିଲା ।

ସୁର କହିଲା, "ଅଶୋକବାବୁ ସେପରି ହେଲେ ଚଳିବ କି ? ବର୍ତ୍ତମାନ ତୁମକୁ ଲୁଚିର ରହିବାକୁ ହେବ ଆମ ସଙ୍ଗରେ । ଏକଥା ଯେପରି ପ୍ରକାଶ ନ ହୁଏ । ସମସ୍ତ ଚୋର ଧରା ହୋଇ ସାରିଲା ପରେ ଏକଥା ବାହାରିବ । ବର୍ତ୍ତମାନ ନଅଜଣ ପୁଲିସଙ୍କୁ ଚୋରଙ୍କ ପୋଷାକ ପିନ୍ଧାଇ ଏବଂ ନିଜେ ପିନ୍ଧି ଦସ୍ୟୁ ଗୃହକୁ ଯିବାକୁ ହେବ । ସେଠାରେ ଜମିଦାରଙ୍କୁ ହତ୍ୟା କରି ସମସ୍ତଙ୍କୁ ଉଦ୍ଧାର କରିବା ।" ଅଶୋକବାବୁ ରାଜି ହୋଇ ଗଲେ । ସବୁ ଯୋଗାଡ଼ କରି ସେମାନେ ବାହାରି ପଡ଼ିଲେ ଷ୍ଟିମରଯୋଗେ ଅଭିମୁଖରେ । ସେଠାରେ ଦେଖି ଲୋକଙ୍କୁ ସେଇ ଚୋର । ଧନ ସମ୍ପତ୍ତି ମଧ୍ୟ ସମସ୍ତ ପାଖରେ ନାହିଁ । ସେମାନଙ୍କର ଦେଖି ଭାରି ଖୁସି ହୋଇଗଲା ।

ସ୍ଥିର କରିଥିଲା ଯେ ସକାଳ ହେଲେ ବିନା ଅପଣ୍ଡରେ ମ୍ୟାନେଜରଙ୍କୁ ଗିରଫ କରିବାକୁ । ଅଶୋକ ବାବୁ ତାର ବ୍ୟବସ୍ଥା ମଧ୍ୟ କରି ଯାଇଥିଲେ ।

ସମସ୍ତେ ଆସିଲେ ଗୁପ୍ତଘର ମଧ୍ୟକୁ ।

ତା ପର ଦିନ ୧୨ଟା ବେଳକୁ ଶୁଣି ପାରିଲେ ଯେ ମ୍ୟାନେଜର ଗିରଫ ହୋଇଛି । ସେମାନଙ୍କର ଆଶା ସଫଳ ହୋଇଛି ଦେଖି ଆଶ୍ୱସ୍ତ ହେଲେ । ଅଶୋକବାବୁଙ୍କର ଭାରି ଇଚ୍ଛା ତାଙ୍କର ସ୍ନେହର କନ୍ୟାକୁ ଦେଖିବେ ବୋଲି । ରାତିରେ ଯିବାକୁ ଠିକ୍ ହୋଇ ରହିଲେ । ସମସ୍ତେ ଏପରି ଭାବରେ ଥାଆନ୍ତି ଯେ, ଜମିଦାର ତାହାଙ୍କୁ ଅବିଶ୍ୱାସ କରି ପାରିବ ନାହିଁ । ସମସ୍ତଙ୍କ ଚାଲି ଚଳନ ଠିକ୍ ଚାକରଙ୍କ ପରି । ଜମିଦାର କିଛି ଜାଣିପାରିଲେ ନାହିଁ । ଅନ୍ଧ ସେ । ନା, ନା ଅନ୍ଧ ବୋଲିଲେ ଭୁଲ ହେବ । ବୋକା, ତାହା ହେଲେ ଠିକ୍ ହେବ । ଯାହାହେଉ ଜମିଦାର ନୂଆ ଚାକରଙ୍କ ଉପରେ ଭାରି ଖୁସି । ସେମାନଙ୍କୁ ତୁହାକୁ ତୁହା, ତାଙ୍କ କୁଶଳ ପ୍ରଶ୍ନ ପଚାରୁଛି ।

ତଥାପି ତା ମନରେ ସନ୍ଦେହ ଆସୁଛି । ସାପକୁ ଆଣି ଘରେ ରଖିଲା ପରି ତାକୁ ମନେ ହେଉଛି । ତାର ଅନୁତାପ ଆସୁଛି, ସତେ ଯେପରି ଗୋଟାଏ ମସ୍ତବଡ଼ ଭୁଲ କରି ପକାଇଛି । କାହିଁକି କଲା ? କ୍ଷମା ଦେବ କିଏ ? ଉଦ୍ଧାର ପାଇବ ବା କିପରି ? ଭାବୁଛି ସମସ୍ତଙ୍କୁ ମୁକ୍ତି ଦେବ । ସମସ୍ତଙ୍କଠାରୁ କ୍ଷମା ମାଗିବ । କିନ୍ତୁ କ୍ଷମା ନ ଦେଇ ଯଦି ସେମାନେ ଅପମାନ ଦିଅନ୍ତି, ତେବେ ତ ସହି ପାରିବ ନାହିଁ । ତେବେ ଆତ୍ମହତ୍ୟା, ଭୀଷଣ ! ପୋଟାସିୟମ ସାଇନାଇଡ୍ ପାଣିରେ ଦେବାକୁ ହେବ । ତାପରେ ସବୁ ଶେଷ, କେହି କହିବାକୁ ନଥିବେ ।

ପୁଣି ଭାବେ, "ତାର ଏ ଦୁର୍ବଳତା କାହିଁକି ? ଯାହାର ଏତେ ସରଞ୍ଜାମ ଅଛି । କୁଖ୍ୟାତ ବିଖ୍ୟାତ ଦସ୍ୟୁ ଯାହାର ଅଧୀନରେ ତାର ପୁଣି ମୃତ୍ୟୁ । ଅସମ୍ଭବ । ତାକୁ କେହୁ ମାରି ପାରିବେ ନାହିଁ । ସାମାନ୍ୟ ମନୁଷ୍ୟ ତାର କଣ କରିବେ । ପୁନର୍ବାର ତା ମୁଣ୍ଡରେ ଘଣେ ସୁମତିକୁ ସେଦିନ କିଏ ଆକ୍ରମଣ କରିଥିଲା । ସେ ଯା ହାତରେ କେଉଁଠି ଅଛି, କାହିଁ ମୁଁ ତ ଆଜି ପର୍ଯ୍ୟନ୍ତ ଜାଣି ପାରିଲି ନାହିଁ । ସୁର ନର ତ ଆଜି ଯାଏ ଚାହିଁ ଚୋରକୁ ଧରାଇ ଦେଇ ପାରିଲେ ନାହିଁ । ତେବେ ସେମାନେ ତ କିଛି ଷଡ଼ଯନ୍ତ୍ର କରୁନାହାନ୍ତି ? ଏ ସୁର ନର କିଏ ? ସେମାନେ କଣ ମୋ ବିପକ୍ଷରେ ? ତାଙ୍କର ଗତି ବିଧିତ କିଛି ଜଣା ଯାଉ ନାହିଁ । ଏବେ ଚୋରମାନଙ୍କ ଗତିବିଧି କପରି ଅନ୍ୟ ଆଡ଼କୁ ଗତି କରୁଛି । କେବେ କେବେ ସେମାନେ ଅବାଧ ହେଉଛନ୍ତି ? ମ୍ୟାନେଜର କାହିଁ ? ସେ ତ ଆଜି ଆସୁନାହିଁ । କଣ ହେଲା ତାର, ଆଜି ଗୁଡ଼ା କାଲି ଅମାବାସ୍ୟା । କେତେ କଣ ହେବ । କିନ୍ତୁ···କାହାନ୍ତି କିଏ ? ମୋର ସହାୟକ କାହାନ୍ତି ? କିଏ ମୋତେ ସାହାଯ୍ୟ କରିବ ? ଏଇ ସୁର ନର । ସେମାନେ ମୋତେ ରକ୍ଷା କରି ପାରିବେ ତ ? ମୁଁ···ହିଁ, ମୁଁ ବଡ଼ ଭୁଲ କରିଛି । ମୋର ଭୁଲର କଣ ପ୍ରାୟଶ୍ଚିତ ନାହିଁ ? ଭଗବାନ କ୍ଷମା କର ମୋତେ, ଉଃ ମରିଗଲି । ଏ କଣ । କିଏ ଜଣେ କାନରେ କହୁ-ଥାଉଛି ବନ୍ଦୀ ସମସ୍ତେ ଅଛନ୍ତି । ସମସ୍ତଙ୍କୁ ମୁକ୍ତ ଦେଇ କ୍ଷମା ମାଗ ।"

ଜମିଦାର ଉଠେ, କିନ୍ତୁ ଗୋଡ଼ ଚଳେ ନା । "ସାମାନ୍ୟ ନାଙ୍ଗ ସେମାନେ ଆର କଣ କରିବେ ? ଏଇ ଭୟକୁ ସେ ଡରିବା କେବେ ନୁହେଁ । ସେମାନଙ୍କୁ ସେ ହତ୍ୟା କରିବ । ଯାହା ପ୍ରତିଜ୍ଞା କରିଛି ତାହା ପୂରଣ କରିବ ।" ଡାକିଲା, 'ରକ୍ଷୀ' ।

ରକ୍ଷୀ ଅଛି ଘରକୁ ଯିବ ।
ଆଦେଶ ହେଲା ମଦ ଆଣ ।

ବୋତଲ ପରେ ବୋତଲ ସରିଲା । ତା ପରେ କାଦୋନ୍ଧ ନିଦ । ଆରାମ !

— ୧୩ —

ଠକ୍ ଠକ୍ ଶବ୍ଦରେ ସୁର ଉଠି ପଡ଼ି କହିଲା, 'କିଏ' ?
'ଭିତରକୁ ଯାଇ ପାରେ କି ?' ବାହାରୁ ପ୍ରଶ୍ନ ଆସିଲା ।
'ଆସି ପାର'। ସୁର ଉତ୍ତର ଦେଲା ।
ସୁମନ୍ତ ହସି ହସି କହିଲା, 'ନମସ୍କାର'।
ସୁର ଅସ୍ଥିର ହୋଇ କହିଲା, "ଆରେ ତୁମେ କିଆଡ଼େ" ?
"ଏଇ ନାହିଁ ବୁଲି ଆସିଥିଲି ଟିକିଏ ।" ସୁମନ୍ତ କହିଲା ।
"ହଉ ବସ" ବୋଲି କହି ସୁର ଗୋଟିଏ ଚଉକି ବଢ଼ାଇ ଦେଲା ।

ସୁମନ୍ତ ଚଉକିଟାରେ ବସି ପଡ଼ି କହିଲା, "ଅଚ୍ଛା ସୁର ବାବୁ ଆପଣଙ୍କୁ ଗୋଟାଏ କଥା ପଚାରିବ ପାରେ କି ?"

ସୁର ମନୋଭାବ ଦମନ କରି କହିଲା, "ହଁ ନା ଆପଣରେ ପଚାରି ପାରନ୍ତି ।"

ସୁମନ୍ତ ଟିକିଏ ଗମ୍ଭୀର ହୋଇ କହିଲା, "ଅଚ୍ଛା ଆପଣ କହି ପାରିବେ ସେ ଧନ କଞ୍ଜାନାଗାରକୁ କିଏ ପାଇଥିଲା ?"

ଏ ପ୍ରଶ୍ନ ପୁଣି ସୁର ଟିକିଏ ଇତସ୍ତତଃ ହୋଇଗଲା । କିନ୍ତୁ ସଙ୍ଗେ ସଙ୍ଗେ ନିଜକୁ ସମ୍ଭାଳି ନେଇ କହିଲା, "ମୁଁ ତ ଅଜ ବଞ୍ଚ ନୁହେଁ, ଜାଣିବ ବା କପରି ?"

"ତେବେ ଆପଣଙ୍କ ଅନୁମାନ ।"

ଅନୁମାନ ଉପରେ ତ ସବୁ ନିର୍ଭର କରିପାରେନା । ହୁଏତ ମୁଁ ଅନୁମାନ କରି କାହାକୁ ଜଣକୁ କହି ଦେଇ ପାରେ । କିନ୍ତୁ ମିଛରେ ନଜାଣି ନ ଶୁଣି, ସ୍ୱଚକ୍ଷୁରେ ନ ଦେଖି ଅନୁମାନ କରି କହିବାଟା ମୋତେ କାହିଁକି ସଙ୍ଗତ ଲାଗୁ ନାହିଁ ।

ସୁମନ୍ତର ଆଖି ଛଳ ଛଳ ହୋଇ ଉଠିଲା । ସେ କହିଲା, "ତୁମେ ବୋଧହୁଏ ଜାଣନା ସୁର ବାବୁ । ଜମିଦାର ଏଥିଲାଗି ମୋତେ କଣ କହିଛି । ମୋତେ ଯେଉଁ ଅପମାନ ଦେଇଛି, ତାହା ବୋଧହୁଏ ମୁଁ ଜୀବନରେ ଭୁଲି ପାରିବି ନାହିଁ । ମୁଁ ତାହାରକୁ ଭୟ କରେ ନା, ଏପରିକି ମଧ୍ୟ ମୃତ୍ୟୁକୁ ସୁଦ୍ଧା ନୁହେଁ । ସାମାନ୍ୟ ଜମିଦାର କଥା ମୁଁ କଣ ଖାତିର କରିବି ? ସେ ମୋର ଅମ୍ବ ସମ୍ମାନରେ ବାଧା ଦେଇଛି । ମୁଁ ଏହାର ପ୍ରତିଶୋଧ ଦିନେ ନା ଦିନେ ନେବି । କହନ୍ତୁ ସୁର ବାବୁ ଆପଣ ମୋତେ ସାହାଯ୍ୟ କରିବେ ନାହିଁ ?" ଅଧୀର ଭାବରେ ସୁମନ୍ତ ସୁରର ହାତ ଧରି ହଲାଇ ଦେଲା ।

ସୁର ରୁମାଲରେ ସୁମନ୍ତର ଲୁହ ପୋଛି ଦେଇ କହିଲା, "ଛି ସୁମନ୍ତ ଦେଖ ! ତୁମେ ଶିକ୍ଷିତ । ଶିକ୍ଷାବଳରେ ତୁମେ ବଳୀୟାନ । ତୁମେ ଏପରି ଅଧୀର ହେଲେ ହେବ ? ତାହାଛଡ଼ା ତୁମେ ମୋତେ ସାହାଯ୍ୟ ମାଗୁଛ, ମୁଁ ବା ତୁମକୁ କପରି ସାହାଯ୍ୟ ଦେବି ।"

"ଓଃ, ତୁମେ ଜମିଦାରଙ୍କୁ ଭୟ କରୁଛ । ସେଥିରେ ଛାଡଣି କଣ ? ସେ ତ ଗୋଟାଏ ମନୁଷ୍ୟ ନୁହେଁ—ଗୋଟାଏ ପଶୁ ତାକୁ ଭୟ କରୁଛ ।" ତାଚ୍ଛଲ୍ୟ ସ୍ୱରରେ ସୁମନ୍ତ କହିଲା ।

ସୁର କହିଲା, "ନା, ନା ସୁମନ୍ତ ଦେବୀ । ତୁମେ ଏପରି ଅଧୀର ହୁଅନା । ମୁଁ ମଧ୍ୟ କାହାରିକୁ ଭୟ କରେ ନା । ସେ ଅଦ୍ଧ ପଶୁ ହୋଇଛି, ଧନେ ସେ ପୁଣି ମନୁଷ୍ୟ ହୋଇପାରେ । ଅଚ୍ଛା, ଛାଡ ସେ ସବୁ କଥ । ଅନ୍ୟ ବିଷୟରେ କଥାବାର୍ତ୍ତା ହେବ ।"

ସୁମନ୍ତ ଦୁଃଖରେ କହିଲା, "ଆପଣଙ୍କର ଇଚ୍ଛା ।"

"ଏଇଟା କଣ ଅପଣଙ୍କ ଇଚ୍ଛା ନୁହେଁ ? ପର କଥା ଗୁଡ଼ାକ ଭାବି ମନରେ ଦୁଃଖ ଆଣିବାଟା କଣ ଭଲ ?"

ସୁମନ୍ତ ପ୍ରକୃତିସ୍ଥ ହୋଇ କହିଲା, "ହଉ ହେଲା ଏବେ ।" କିଛି ସମୟ ଚୁପ୍ ହୋଇ ବସି ସୁମନ୍ତ ପଚାରିଲା, "ଅଚ୍ଛା, ସହର ବୁଲିଲ ଯେ ମୋ ପାଇଁ କଣ ଆଣିଲ ?"

"ଆରେ ସତେ ତ । ମୁଁ ଭୁଲି ଯାଇଥିଲି" କହି ସୁର ଚମଡ଼ା ସୁଟକେଶ ଭିତରୁ ଗୋଟିଏ ସୁନାର ଚେନ କାଢ଼ି ସୁମନ୍ତ ଦେବୀଙ୍କୁ ଦେଖାଇଲା ।

"ଦେଖିଲ ଏଇଟା ତୁମ ପାଇଁ ଆଣିଛି । ପସନ୍ଦ ହେଉଛି ତ ?"

ସୁମନ୍ତ ହାରଟିକୁ ଦେଖି ସୁର ହାତକୁ ବଢାଇ ଦେଇ କହିଲା, "ବେଶ୍ ହୋଇଛି ।"

ସୁର ହସି ହସି କହିଲା, "ଆରେ ପିନ୍ଧ ନା"—କେମିତି ଦେଖାଯିବ କଣ ?

ସୁମନ୍ତ ତଳକୁ ମୁହଁ ପୋତି ଚୁପ୍ ବସିଲା ।

ସୁର କହିଲା, "ବସିଲ ଯେ, ଆରେ ଦେଖ ନା କପରି ଦିଶୁଛି ? ଅଚ୍ଛା, ମୁଁ ପିନ୍ଧାଇ ଦେଉଛି" କହି ଉଠିଯାଇ ପିନ୍ଧାଇ ଦେଲା ।

ସୁମନ୍ତର ଗୋଲାପି ଅଧରରେ ହାସ୍ୟ ରେଖା ଫୁଟି ଉଠିଲା ।

ସୁର କହିଲା, "ବେଶ୍ ତ । ବଡ଼ ଚମତ୍କାର ! ଆଇନାରେ ଦେଖ ନା କପରି ଦିଶୁଛି ।"

ସୁମନ୍ତ ଆରସିରେ ନିଜର ପ୍ରତିବିମ୍ବ ଦେଖି ଚମକି ପଡ଼ିଲା । ସତରେ ସେ ଏତେ ସୁନ୍ଦର ! ସେ ସୁରକୁ କଣ କହିବ ତାର ପ୍ରତି-ଦାନରେ କଣ ଦେବ କିଛି ଠିକ୍ କରି ପାରିଲା ନାହିଁ । ଲାଜ ଲାଜ ହୋଇ କହିଲା, "ଆପଣଙ୍କୁ ଅନେକ ଧନ୍ୟବାଦ ସୁରବାବୁ ।"

କିଛି ସମୟ କଥାବାର୍ତ୍ତା ପରେ ସୁମନ୍ତ କହିଲା, "ମୁଁ ଯାଉଛି ସୁରବାବୁ ନମସ୍କାର । ସିଆଡ଼େ ଅନେକ କାମ ଅଛି ।"

ସୁର କହିଲା, "ପୁଣି କେବେ ?"

ସୁମନ୍ତ ହସି ହସି ଚାଲିଗଲା ।

—୧୪—

ସେ ଦିନ ରାତି । ଜଗତ ନିସ୍ତବ୍ଧ । ଦସ୍ୟୁମାନେ ସୁଖ ନିଦ୍ରାରେ ନିଦ୍ରିତ ।

ଏଇ ଠିକ୍ ସମୟ ଭାବି ରବି ଉଠି କହିଲା, "ସୁରବାବୁ ସବୁ ଠିକ୍ ତ ? ଅଶୋକ ବାବୁ କୁଆଡ଼େ ଗଲେ ।"

ସୁର ଉତ୍ତର ଦେଲା, "ସବୁ ଠିକ୍ ଅଛି ।"

ରବି ହାତର ଟର୍ଚ୍ଚ ଜଳି ଉଠିଲା । ଅନ୍ଧକାର ମଧ୍ୟ ଥୋଡ଼ି ଅଳ୍ପ ହୋଇ ଉଠିଲା, ସମସ୍ତେ ଆଗକୁ ଚାଲିଲେ । କିଛି ପାଦକ ଅତିକ୍ରମ କରି ଆସିବା ପରେ ବନ୍ଦୀ କୁଟୀର ସମ୍ମୁଖରେ ପହଞ୍ଚିଲେ ।

କୁଟୀରର ନିକଟବର୍ତ୍ତୀ ହେଲାକ୍ଷଣି ପ୍ରହରୀ ପାଟି କରି ଉଠିଲା, "କିଏ ଜମିଦାର ସାହେବ ?"

ସମସ୍ତେ ଦେଖିଲେ ବର୍ତ୍ତମାନ ଖୁବ୍ ବିପଦ । କିଛି ଉପାୟ କରିବାକୁ ହେବ । ରବି ଟର୍ଚ୍ଚ ଲାଇଟ ଦେଇ ନିରବ ଭାବରେ କଣ କହିଲା. ତା ପରେ ଅନ୍ଧାର ମଧ୍ୟରେ ଭୁସ୍ କରି ପଡ଼ିବାର ଗୋଟାଏ ଶବ୍ଦ ହେଲା ଏବଂ ଦୁଇ ଲୋକଙ୍କ ମଧ୍ୟରେ ଧସ୍ତା ଧସ୍ତି ହେଉଥିବାର ଶୁଣାଗଲା ।

ରବି ମନକୁ ମନ ହସିବାକୁ ଲାଗିଲା, କିନ୍ତୁ ସମସ୍ତ ପରେ ରବି ହାତ ଟର୍ଚ୍ଚ ଜଳି ଉଠିଲା, ପ୍ରହରୀଟି ଚେତା ଶୂନ୍ୟ ହୋଇ ଢଳେ ପଡ଼ିଲା।

ଶୀଘ୍ର ଧାଇଁ ପିଲାଏ ସମସ୍ତେ ଭିତରକୁ ପଶିଲେ। ରେଖା, ଲତା ପ୍ରଭୃତି ଚମକି ପଡ଼ିଲେ। କଣ ପୁନର୍ବାର ଜମିଦାର ଆସିଲା, କିନ୍ତୁ ପଛକୁ ଚାହିଁଲେ। ଏକଣ ! ଆଜି ଏକଣ ଦେଖୁଛନ୍ତି ! ସମସ୍ତଙ୍କର ଭାଇ ଏବଂ ପିତା ସେମାନଙ୍କର ସମ୍ମୁଖରେ।

ସମସ୍ତେ ନିଜ ନିଜର ପିତା ଏବଂ ଭାଇମାନଙ୍କୁ ଆନନ୍ଦରେ କୁଣ୍ଢାଇ ପକାଇଲେ।

ଅଶୋକ ବାବୁ ଲତାର ମୁଣ୍ଡ ଆଉଁସି ଦେଇ ଦେଇ କହିଲେ, "ଏତେ ନିଷ୍ଠୁର ନା, ତୁ। ବାପା ମାଙ୍କୁ ଛାଡ଼ି ଆସି ଏଠାରେ ବଡ଼ ନିଶ୍ଚିନ୍ତରେ ଅଛୁ।"

ଲତା ଏହା ଶୁଣି କାନ୍ଦି ପକାଇଲା। କାନ୍ଦ କାନ୍ଦ ସ୍ୱରରେ ଡାକିଲା "ବାପା, ମୁଁ ଭୁଲ କରି ନାହିଁ। ମୁଁ ଜାଣି ଜାଣି ତୁମକୁ ଛାଡ଼ି ଆସି ନାହିଁ। ମୁଁ ନିର୍ଦ୍ଦୋଷ। ବଦମାସ୍ ଜମିଦାର ମତେ ଆଣି ରଖିଛି। ଏବେ ମତେ ନୁହେଁ ଏ ଦୁହିଁଙ୍କୁ ମଧ୍ୟ" କହି ଲତା, ରେଖା ଏବଂ ଆଶାଙ୍କ ଆଡ଼କୁ ହାତ ବଢ଼ାଇଲା।

ଅଶୋକ ବାବୁ ଆଉ ସମ୍ଭାଳି ପାରିଲେ ନାହିଁ। ପ୍ରାଣର କନ୍ୟାକୁ ଆନନ୍ଦରେ କୁଣ୍ଢାଇ ଧରିଲେ ଏବଂ ପିଲାଙ୍କ ପରି କାନ୍ଦି ଉଠିଲେ।

କି ସୁନ୍ଦର ଏ ମିଳନ। ଚମତ୍କାର ! ଏପରି ମିଳନ ପୁଣି ଜଗତରେ ଶୋଭାପାଏ। ବିଚ୍ଛେଦ ନ ଥିଲେ ମିଳନର ସୌନ୍ଦର୍ଯ୍ୟ ଆସିବ କୁଆଡୁ।

ଏହିପରି କିଛି ବେଳ କଟିଗଲା ।

ନର କହିଲା, "ଆଉ ଡେରି କଲେ ଚଳିବ ନାହିଁ । ଏଥର ଶୋଇବାକୁ ଯିବା ।"

ସମସ୍ତେ ହଁ ଭରିଲେ ।

ସୁର କହିଲା, "ଆଉ ଭୟ କର ନା ତୁମେମାନେ । କାଲି ପର୍ଯ୍ୟନ୍ତ ଏହିଠାରେ ବନ୍ଦୀ ଭାବରେ ଥାଅ । କାଲି ତୁମମାନଙ୍କର ମୁକ୍ତିର ଦିନ, ସବୁ ଠିକ୍ ହୋଇଯିବ । ଭାବନା କର ନାହିଁ । ହସି ଥାଅ । ଆମେ ଯାଉଛୁ ।"

ସମସ୍ତେ ଶୁଣିଲେ, କବାଟ ବାହାର ପଟରୁ ବନ୍ଦ ହେବାର ଶବ୍ଦ ଶୁଣାଗଲା ।

ତିନି ଜଣଯାକ ଅସ୍ଥିର ମନରେ ବିଛଣାରେ ପଡ଼ିଗଲେ ।

ସୂର୍ଯ୍ୟ ଉଠିବା ବେଳକୁ ସମସ୍ତେ ପଳାଇ ଆସିଲେ ।

ତା ପର ଦିନ । ଭୋର୍ ସକାଳୁ ଗୋଟାଏ ବଡ଼ ଘଣ୍ଟା ବାଜି ଉଠିଲା ଢଂ, ଢଂ । ସମସ୍ତେ ଆସି ଜମିଦାରଙ୍କ ପାଖେ ଜୁଟି ହେଲେ ।

ଜମିଦାର ମଝିରେ ଠିଆ ହୋଇ କହିଲେ, "ଦେଖ, ଆଜି ଦୋଳର ଦିନ । ସମସ୍ତେ ଯେତେ ପାରୁଛ ସେତେ ଆନନ୍ଦ କର । ଆଜି ସମସ୍ତଙ୍କ ପାଇଁ ଘରୁ ଅଡ଼ା ଖୋଲା । ରାତି ନ'ଟା ବେଳକୁ ମୁଁ ପୂଜା କରିବି, ବାରଟା ବେଳକୁ ପୂଜା ସାରିବି ଏବଂ ତା ପରେ ବଳି ଦିଆଯିବ, ତିନି କନ୍ୟା । ତୁମେମାନେ ଯାଅ ଆନନ୍ଦ କର ।" ଏତକ କହି ଜମିଦାର ଚାଲିଗଲେ ।

ସମସ୍ତେ ଜୟ ଜୟ ନାଦ କରି ଫେରି ଆସିଲେ । କିନ୍ତୁ ଜମିଦାର ମନରେ ଆନନ୍ଦ ନାହିଁ । ସନ୍ଦେହର ଛାୟା ମନରେ ଘନୀଭୂତ ହୋଇ ଉଠୁଛି । ତାର ଅନୁଚର ଯେପରି କେହି ନାହାନ୍ତି, ସମସ୍ତ ପରର, ଏହିପରି ଲାଗୁଛି ।

ରେଖା, ଲତା ଏବଂ ଅଣା ଛଡ଼ା ଆଉ କେହି ନାହାନ୍ତି । ସମସ୍ତେ ଶକ୍ତ ଜାଲ ବେଷ୍ଟନ । ଦସ୍ୟୁ ବେଶ ଖୁଲିଯାଉଛି । ଜୀବନ ବୁଝି ଦେଲେ ଚାଲ ଦୁଇଟି ଗଣ୍ଡା ଅଣି ଲଗାଇ ରଖିଛି ।

ଠିକ୍ ୧୨ଟା । ଭୀଷଣ ସ୍ୱର । କଣା ସାଇଁ, ସାଇଁ ଗର୍ଜୁଛି । ଜୁଟିତ ଉର ତୁଳା ସବଳ । ପଥର ମୂର୍ତ୍ତି ଅତି ଭୀଷଣ ଦେଖାଯାଉଛି । ମସ୍ତକରେ ନରମୁଣ୍ଡ ମାଳା । ରଙ୍ଗ ଭୀଷଣ । ଜମିଦାର ଉଠି ଗୁଲି ଚଳେଇଲ ।

ସେତେ । କଣ ମୁଁ ଦେଖୁଛି ଆଜ । ଅଖିକୁ ପ୍ରଥମେ ବିଶ୍ୱାସ କରି ପାରିଲେ ନାହିଁ । ପୁନର୍ବାର ଆଖି ମଳି କରି ଚାହିଁଲେ । ଆଗରୁ ଯାହା ଦେଖିଥିଲେ ସେଇଆ ।

ତମଙ୍କ ଉଠିଲା । ଗର୍ଜନ ଦେବ । ଜୀବନ, ଅଶୋକବାବୁ, ତୁମେ ମୋର ସମସ୍ତଙ୍କୁ ମାରିଛ । ତୁମେ ନା, ଜନ୍ମ ମୋର ଖଣ୍ଡୁଏ ରକ୍ତ ଥିବାପର୍ଯ୍ୟନ୍ତ ମୋତେ ଛୁଇଁ ପାରିବ ନାହିଁ । ତୁମେ ମୋ ନେତ୍ରଙ୍କୁ ଠକିଛ । ତୁମେ ଏ ସବୁ ବାଣ୍ଡ କରିଛ । ଦେଖ, ଦେଖାପାଉ ।

ଏତିକି କହି ଜମିଦାର ଗୋଟିଏ ଜଣଙ୍କୁ ଖଣ୍ଡାଟିଏ ନେଇ ଅଟିଲେ । ଅନେକ ବାଜି ଶ୍ରୋତ୍ରି ଟହିଫ ଉଠୁଛି । ଅଶୋକ ବାବୁ ପିସ୍ତଲ ଛାଡ଼ିଲେ । ଜୀବନ ମନା କଲା । କହିଲା, "ବନ୍ଦ କରନ୍ତୁ ଅଶୋକ ବାବୁ । ପିତୃ ମାତୃ ହତ୍ୟାର ପ୍ରତିଶୋଧ ନ ନେଇ ମୁଁ ଆଜି ଏ ଦେହମାନଙ୍କୁ ଛାଡ଼ୁନାହିଁ ।"

ଜୀବନ ଖଣ୍ଡା ନେଇ ଧାଇଁଲା । ଘର ଭିତରେ କେତେ ସୁନ୍ଦର ଅସ୍ତ୍ରମାନେ ଉପରେ ଗୋଟିଏ ଜଣକେ ଛଡ଼ା ଦେଇ ଯୁଦ୍ଧ ଦେଖିବାକୁ ଲାଗିଲେ ।

ବ ଭୀଷଣ ସେ ଯୁଦ୍ଧ । ଗୃହ୍ଣି ହେଉ ନାହିଁ । ନୁଇଟି ପାଗଳ ହାତୀ, ହେହୁ କାହାରକୁ କମ୍ ନୁହନ୍ତି । ଏକାଦଳ, ଏକାଷନ୍ତି । ଏବଣ ? ସମସ୍ତେ ଅସ୍ଥିର ।

ଜମିଦାର ଭାବୁଛି, "ଜୀବନ ଯେପରି ଉଚ୍ଚାକ୍ତ, ତାର ମୃତ୍ୟୁ ଅନିବାର୍ଯ୍ୟ । ସେ ଆଉ ବଞ୍ଚିବ ନାହିଁ । ଜୀବନ ନିଶ୍ଚୟ ତାକୁ ହତ୍ୟା କରିବ ।"

ଜୀବନ ଭାବୁଛି, "ଜମିଦାର ବୃଦ୍ଧ, ସେ ସୁବତ ... ସମୟରେ ଏତେ ବେଳଯାଏ ଠିଆ ହୋଇ ପାରୁଛି ... ଭାବି ପାରୁ ନାହିଁ । ଅସ୍ଥିର ଲଗୁଛି ତାକୁ ।

ଘଣ୍ଟା ଘଣ୍ଟା ଧରି ଯୁଦ୍ଧ ଗ୍ଲାଲିଛି । ଦୁଇ ଘଣ୍ଟା ବିତି ଗଲାଣି । ଜମିଦାରର ହାତ ଅବଶ ହୋଇ ଆସିଲା । ଏତିକିବେଳେ ଜୀବନର ଖଣ୍ଡାଟି ଜମିଦାରର ବାହୁ ଆଘାତ କଲା । ଜମିଦାର ଆହତ ହୋଇ ତଳେ ପଡ଼ିଗଲା ।

ତଥାପି ଜୀବନର ତୃଷ୍ଣା ମେଣ୍ଟିଲା ନାହିଁ । ସେ ତାକୁ ଶୂଳୀ ଉପରକୁ ଘୋଷାରି ନେଲା । ପ୍ରଥମ ଶୂଳୀରେ । କାଳିନ ଘଟକୁ ନଦୀକୁ ପଠାଇଲା ଜଳ ଗୋଡ଼ିବାକୁ ।

ଜମିଦାରର ମୋହ ଭାଙ୍ଗିଗଲା । ନିରାଶ୍ରୟ ସେ । ଆଉ ବହୁ ପାରିଲା ନାହିଁ । ଶୂଳୀ ଉପରେ ଶୋଇଛି । ସେଣେ ଜଳ ଗୋଡ଼ ହେବାକୁ ଛୁରୀ ଗୁଡ଼ାକ ଧୀରେ ଧୀରେ ବସି ଅଛୁଛି । ଜମିଦାରକୁ ତୃପ୍ତି ଦେବାକୁ, ପର ପାରକୁ ନେଇଯିବ ବୋଲି ।

ଜମିଦାର ଚିତ୍କାର କରି ଉଠିଲେ । ଅଶୋକ ବାବୁ କ୍ଷମା କର ! ଜୀବନରେ ମୁଁ ବଡ଼ ଭୁଲ କରିଛି, କ୍ଷମା କର । ତୁମର ଦ୍ରବ୍ୟର ଜନ୍ୟାଙ୍କୁ ଫେରାଇ ଦେଉଛି । ମୋତେ କ୍ଷମାଦିଅ । କିନ୍ତୁ ଅଶୋକ-ବାବୁ ଶୁଣିଲେ ନାହିଁ ।

ତା ପରେ ଜମିଦାର ଜୀବନକୁ ମିନତି କରି କହିଲା, "ଜୀବନ ମୁଁ ବଡ଼ ଭୁଲ କରିଛି । ତୋର ପିତା, ମାତାକୁ ମୁଁ ହତ୍ୟା କରିଛି । ମୁଁ ବଡ଼ ପାପୀ । ମୋତେ କ୍ଷମା କର ।" ଜୀବନ ମଧ୍ୟ କିଛି ଶୁଣିଲା ନାହିଁ ।

ଅନ୍ଧ ହାତେ ଅଛି ତୁରସ୍ମାନ ଗଳାବାକୁ ଜମିଦାରଙ୍କ ଦେଉଥିରେ ।

ଜମିଦାର କହି ଉଠିଲେ, "ରତ୍ନ, ମୁଁ ବଡ଼ ଭୁଲ କରିଛି । କହିଲୁ ଭଲ କେବେ ତୁମକୁ ମୁଁ ୪୦ ଖମ୍ବପରେ ରଖିଛି । ହଁ ତୁମର ମାତାଙ୍କୁ ମୁଁ ହତ୍ୟା କରିଛି । କିନ୍ତୁ ସବେ କଣ ତୁମେ ମତେ କ୍ଷମା କରିବ ନାହିଁ । କ୍ଷମା କର । ନୋହିଲେ ମୁଁ ମଲି । ତୁ କ ଶୁଣିଲୁ ନାହିଁ । ଦେଖ, ମୋର ଭାଗ୍ୟ । ରେଖା, ତୁ କଣ ଏ ମୃତ୍ୟୁ ଅଟିରେ ଦେଖିବୁ, ତୋ କଣ୍ଠରେ ଦୟା ସମ୍ଭବନାହିଁ । ତତେ କଣ ଶୁଭୁ ନାହିଁ । ମୋତେ କ୍ଷମା କର । ମୁଁ ଅଦ୍ଭ ଧନେ ତୋର ଅନିଷ୍ଟ କରିବି ନାହିଁ । ମତେ କ୍ଷମା ଦେ ।"

ରେଖା କିଛି କହି ପାରିଲା ନାହିଁ । କିଙ୍କର୍ତ୍ତବ୍ୟ ହୋଇ ଠିଆ ହୋଇ ରହିଲା ।

ଜମିଦାର ଆଶା ନ ଦେଖି ଲତାକୁ କହିଲେ "ଲତା, ତୋ ବାପାଙ୍କ ଫେର ପାଇଲୁ, ତୋର ମାଆ ପାଖକୁ ଫେରିଯିବୁ । ସତେ

କଣ ଏ ବୃଦ୍ଧକୁ ଏ ଗଳିରେ ମାର ଦେଇଯିବୁ, ତୋର କଣ ଦୟା ହେଉନାହିଁ । ହଜ ତୋର ଇଚ୍ଛା ।"

ଅଳ୍ପ ଅଳ୍ପ ସମୟ । ପାଞ୍ଚ ମିନଟ୍ ମଧ୍ୟରେ ସବୁ ଶେଷ ହୋଇ-ଯିବ । ଜମିଦାର ଶେଷମୂହୂର୍ତ୍ତି ପାଇଁ ଅଶାକୁ କ୍ଷମା ମାଗିଲା । "ଅଶା, ତୋର ବାପା ନାହାନ୍ତି, ମାଆ ନାହାନ୍ତି । ମନେ କର ମୁଁ ତୋର ବାପା । ବାପାକୁ କଣ ମାରିବାକୁ କିପରି ହାତ ଯାଏ, କହେଲ ତୁହେ । ମୁଁ ଯଦି ତୋର ପ୍ରକୃତରେ ବାପା ହୋଇଥାନ୍ତି, ତେବେ କଣ ମୋତେ ଏପରି ଅବସ୍ଥାରେ ଦେଖି ସହି ପାରନ୍ତୁ । ତୋର ଏ ଅଧମ ପିତାକୁ କ୍ଷମା କର । ଥରେ ତାକୁ ପିତା ବୋଲି । ମରଣ ପୂର୍ବରୁ ସେ ତାକ ଥରେ ଶୁଣେ । କି ଶାନ୍ତିରେ ମରିବି । କାହାରିକୁ କିଛି କହିବି ନାହିଁ । କ୍ଷମା କର, ସମସ୍ତେ ରକ୍ଷା କର ।"

ଅଜଣା ସ୍ୱରରେ ଅଶା ପାଟିରୁ ବାହାରି ପଡ଼ିଲା "ବାପା" ।

ରବି ପାଟି କରି ଉଠିଲା, "ଅଶା କଣ କହିଲୁ ।" ଅଶା ଗମ୍ଭୀର ସ୍ୱରରେ କହିଲା, "ମୁଁ କେବେ କାହାରିକୁ କ୍ଷମା କରି ନାହିଁ । ତାଙ୍କର ପ୍ରାୟଶ୍ଚିତ୍ତ ପୂର୍ଣ୍ଣ ହୋଇଛି । କ୍ଷମା କର ଭାଇ, କ୍ଷମା ଦିଅ ସମସ୍ତେ ।"

ଜୀବନ କିଛି କହି ପାରିଲା ନାହିଁ । ତା ପାଟିରୁ ବାହାରିଲା "ବନ୍ଦକର ।"

ଜମିଦାର ବାହାର ଅସିଲେ । ମରଣ ମୁଖରୁ ବର୍ତ୍ତି ଅସିଛନ୍ତି । ଅଶା ଏବଂ ରବିକୁ କୁଣ୍ଢାଇ ପକାଇଲେ ।

କି ସୁନ୍ଦର ମିଳନ । ପୃଥିବୀରେ ଏ ମିଳନ ବିରଳ ।

ରବି କହିଲା, "ମୋତେ କ୍ଷମା କର ବାପା" ।

ଜମିଦାର ଦୁହିଁଙ୍କୁ ନିଜର ବାହୁ ଭିତରକୁ ଭିଡି ଆଣିଲେ ଏବଂ ଜୀବନର ସହୃତ ଅଶାକୁ ମିଳାଇ ଦେଲେ । ଜୀବନର ପିତା ମରିବା ପୂର୍ବରୁ ରେଖାକୁ ନବ ହାତରେ ସମର୍ପି ଦେଇଥିଲେ । ଜୀବନ ତା ଅଭୀପ୍ସିତା ଚାହିଁବ ? ତା ମଧ୍ୟ ପୂରଣ ହୋଇଗଲା ।

ଅଶୋକ ବାବୁ ରବି ଏବଂ ଲତାକୁ ନେଇ ତାଙ୍କ ଘରକୁ ଚାଲିଗଲେ ।

ଜମିଦାର, ଜୀବନ, ଲବ, ରେଖା ଏବଂ ଅଶାକୁ ନେଇ ସୁନ୍ଦର ମଫସଲକୁ ଫେରି ଆସିଲେ । ଜମିଦାରଙ୍କ ସ୍ତ୍ରୀ ଗୃହେ ବସି ଥିଲେ । ଗ୍ରାମରେ ସମସ୍ତେ ଏମାନଙ୍କୁ ପାଇ ଆନନ୍ଦ ସାଗରରେ ଭାସିଗଲେ । ସମସ୍ତେ ଆନନ୍ଦରେ ଅଧୀର ଏ ମଧୁର ମିଳନ ରେ କିଏ ବା ଆନନ୍ଦ ନ ହେବ ।



ମୁଦ୍ରାକର-ଶ୍ରୀ ବନମାଳୀ ମିଶ୍ର_ନବଭାରତ ପ୍ରେସ, କଟକ, ୧୯୫୦-୧୦୦୦